# ଚୀନ ଦେଶର ଲୋକକଥା

## ଦ୍ୱିତୀୟ ଭାଗ

ନିକୁଞ୍ଜ କିଶୋର କାନୁନଗୋ



## ସୂଚୀ



Digitized by srujanika@gmail.com

# ଚତୁରୀ ନାରୀ

ପୂର୍ବକାଳରେ ଚୀନ୍ ଦେଶରେ ଗୋଟିଏ ପାହାଡ଼ ପାଖରେ ଜଣେ ତରୁଣ ଚାଷୀ ବାସ କରୁଥିଲା । ତା ନାଁ ଚୁଙ୍ଗ୍ । ସେ ହାଡ଼ଭଙ୍ଗା ପରିଶ୍ରମ କରୁଥିଲା । କିନ୍ତୁ ସେ ଦେଶର ଦୁଷ୍ଟ ରାଜାଙ୍କୁ ନାନାପ୍ରକାର କର ଦେବାକୁ ପଡ଼ିବାରୁ ସେ ବଡ଼ ହଇରାଣରେ ଚଳୁଥିଲା । ତେଣୁ ସେ ବିବାହ କରି-ପାରି ନ ଥିଲା । ଦୁଷ୍ଟ ରାଜାର ରାଜଭଣ୍ଡାର ଧନରତ୍ନରେ ପୂରି ରହିଥିଲା । ରାଜାର ଶହ ଶହ ସ୍ତ୍ରୀ ଥିଲେ । କିନ୍ତୁ ଚୁଙ୍ଗ୍ ପାଖରେ କଣା କଉଡ଼ିଟିଏ ବି ନ ଥିଲା । ସେଥିଯୋଗୁ ତା'ର ବିବାହ ହୋଇପାରୁ ନ ଥିଲା ।

ଦିନେ ଜଣେ ଚିତ୍ରକର ଚୁଙ୍ଗ୍ ଦୁଃଖରେ ଦୁଃଖିତ ହୋଇ ଏକ ସୁନ୍ଦରୀ ନାରୀ ଛବି ଆଙ୍କି ତାକୁ ଦେଲା । ଚୁଙ୍ଗ୍ ତା'ର ଘରକାନ୍ଥରେ ଛବିଟା ଟାଙ୍ଗିଲା । ସେହି ଛବିକୁ ଅନେଇ ତା'ର ନିସ୍ତୁଟିଆ ବେଳ କଟିଯାଏ ।



Digitized by srujanika@gmail.com

ଗୃଙ୍ଗ୍ ସେହି ଅପୂର୍ବ ସୁନ୍ଦରୀ ନାରୀ ଛବିଟିର ରୂପରେ ମୁଗ୍ଧ ହେଲା । ତା ପରଦିନ ସକାଳେ ସେ କ୍ଷେତକୁ କୃଷକାମରେ ବାହାରିଲା-ବେଳେ ଛବି ଆଡ଼କୁ ଚାହିଁ ଦୀର୍ଘନିଶ୍ୱାସ ପକାଇ କହିଲା—

"ମୋ ପାଇଁ ଯଦି ତୁ ରାନ୍ଧିବାଢ଼ି ଥୋଇ ପାରନ୍ତୁ... ।"

ସଞ୍ଜରେ ଘରକୁ ଫେରିଲାବେଳେ ସେ ଖଣ୍ଡେ ଦୂରରୁ ଦେଖିଲା ଯେ ତା' ଘରୁ ଧୂଆଁ ବାହାରୁଛି । ଏହା ଦେଖି ତାକୁ ଆଶ୍ଚର୍ଯ୍ୟ ଲାଗିଲା । ଘରେ ପହଞ୍ଚି ସେ ଦ୍ୱାର ଖୋଲି ଘର ଭିତରକୁ ପଶି ଦେଖିଲା ଖାଇବା ଜିନିଷ ସବୁ ରନ୍ଧାହୋଇ ଥୁଆ ହୋଇଛି । ସେ ଅତ୍ୟନ୍ତ ବିସ୍ମିତ ହୋଇଗଲା । କିନ୍ତୁ ସେ ଅତି ଖୁସିହୋଇ ସେ ସବୁକୁ ଖାଇଲା । ପରଦିନ ସେ ତା'ର ଶବ କୋଟ୍ ଖଣ୍ଡିକ ପେଡ଼ିରୁ କାଢ଼ି ଅଲଗୁଣିରେ ରଖିଲା । ସେ କହିଲା, କାଲି କିଏ ଜଣେ ସ୍ତ୍ରୀଲୋକ ଦୟାକରି ମୋ ପାଇଁ ରାନ୍ଧି ବାଢ଼ି ରଖିଥିଲା; ସେହିପରି ଆଜି ଏହି ଶବ କୋଟ୍ ଖଣ୍ଡିକ ସିଲାଇ କରି ଦିଅନ୍ତା କି ? ଏହା କହି ସେ ତା'ର ବିଲକୁ ଗଲା । ସେଦିନ ସେ ଚଞ୍ଚଳ ବିଲରୁ ଫେରି ଆସିଲା । ଘର ପାଖରେ ପହଞ୍ଚି ଛପି ଛପି ଝରକା ପାଖରେ ଉଙ୍କିମାରି ଘର ଭିତରକୁ ଚାହିଁଲା । ଜଣେ ସୁନ୍ଦରୀ ଯୁବତୀ ବସି ତା'ର ଛିଣ୍ଡା କୋଟ୍‌ଟି ସିଲାଇ କରୁଥିବାର ଦେଖିଲା । କାନ୍ଥରେ ଝୁଙ୍ଗା ହୋଇ-ଥିବା ଛବିଟି ଖଣ୍ଡିଏ ସାଦା ଧଳା କାଗଜ ହୋଇ ଯାଇଥିଲା । ଗୃଙ୍ଗ୍ ଚଟ୍‌କରି ଘର ଭିତରକୁ ପଶିଯାଇ ଯୁବତୀର ହାତ ଧରିପକାଇ କହିଲା, "ତତେ ମୋର ଅନୁରୋଧ, ତୁ ଆଜି ସେ ଛବିକୁ ଫେରି ଯାଆନା ।" ମୁଣ୍ଡ ହଲାଇ ଯୁବତୀଟି ସମ୍ମତି ଜଣାଇଲା । ତା'ପରେ ସେ କହିଲା—ତମେ ଅତି ଭଲ ଲୋକ, ମୁଁ ତମ ପାଖରେ ରହିବି । ଆନନ୍ଦରେ ଅଧୀର ହୋଇ ଗୃଙ୍ଗ୍ କାନ୍ଥରେ ଝୁଙ୍ଗା ହୋଇଥିବା ଧଳା କାଗଜଟି ବାକ୍ସ ଭିତରେ ରଖି କୋଳପ ପକେଇ ଦେଲା । ତରୁଣ ଗୃଙ୍ଗ୍ ଓ ସୁନ୍ଦରୀ ତରୁଣୀ ଦୁହେଁ ଭଗବାନଙ୍କୁ ସାକ୍ଷୀ ରଖି ପରସ୍ପରକୁ ବିବାହ କଲେ । ସୁନ୍ଦରୀ ତରୁଣୀ ଘରଣୀ ସ୍ୱଭାବରେ ଅତି ପ୍ରବୀଣା ଥିଲା । ତେଣୁ ଏହି ଦମ୍ପତି ଅତି ସୁଖରେ ଚଳିଲେ । ସମସ୍ତେ ତରୁଣୀଟିକୁ ପ୍ରଶଂସା କରୁଥିଲେ ଏବଂ ଚନ୍ଦ୍ରମୁଖୀ ନାରୀ ବୋଲି କହୁଥିଲେ । ଗୃଙ୍ଗ୍‌ର ଜୀବନ

Digitized by srujanika@gmail.com

ମହାଖୁସିରେ କଟିଯାଉଥିଲା । ଦିନେ ଚତୁରୀ ନାରୀ ଏକୁଟିଆ ଘରେ ଥିଲା । ସେହି ଘର ପାଖଦେଇ ଦୁଇଜଣ ଲୋକ କାନ୍ଦି କାନ୍ଦି ଯାଉଥିଲେ । ଚତୁରୀ ନାରୀ ସେମାନଙ୍କୁ କାନ୍ଦିବାର କାରଣ ପଚାରିଲା । ଲୋକ ଦୁଇଟି କହିଲେ, ସେ ଦୁହେଁ ହେଉଛନ୍ତି ଦୁଇଜଣ ଶିକାରୀ । ରାଜା ସେ ଦୁହିଁଙ୍କୁ



ଦୁଇଟି ପାରା ଧରି ନେବାପାଇଁ ଆଜ୍ଞା ଦେଇଛନ୍ତି । ରାଜା ପ୍ରତିଦିନ ପାରାମାଂସ ଖାଇବାକୁ ଭଲ ପାଆନ୍ତି । କିନ୍ତୁ ଦୁର୍ଭାଗ୍ୟକୁ ସେ ଦୁହେଁ ଆଜି ବୁଲି ବୁଲି କେଉଁଠାରେ ପାରା ପାଉ ନାହାନ୍ତି । ଖାଲି ହାତରେ ଫେରିଲେ ରାଜା ସେ ଦୁହିଁଙ୍କ ମୁଣ୍ଡକାଟ କରିବେ । ତେଣୁ ସେମାନେ ବିକଳରେ କାନ୍ଦୁଛନ୍ତି । ଚତୁରୀ ନାରୀ କହିଲା—ଏଇ କଥା ତ ? ସେଇଠି ଠିଆ ହୋଇଥାଅ । ମୁଁ ତୁମ୍ଭ ଦୁହିଁଙ୍କି ଏ କାମରେ ସାହାଯ୍ୟ କରିବି । ଏହା କହି ସେ ଘର ଭିତରକୁ ଗଲା ଏବଂ ଖଣ୍ଡେ ସାଦା ଧଳା କାଗଜକୁ କତୁରୀ ସାହାଯ୍ୟରେ ଦୁଇଟି ପାରା ଛବି କାଟିଲା । ସେ ସେହି କାଗଜ ତିଆରି ପାରା ଦୁଇଟିକୁ ପବନରେ ଉପରକୁ ଉଡ଼ାଇ ଦେଲା । ତତ୍‌କ୍ଷଣାତ୍ ଦୁଇଟି ଜୀବନ୍ତ ପାରା ହୋଇ ଉଡ଼ିଯିବା ସମୟରେ ଶିକାରୀ

Digitized by srujanika@gmail.com

ଦୁହେଁ ଧରିନେଲେ । ପାରା ଦୁଇଟି ପାଇ ଶିକାରୀ ଦୁହେଁ ଚଲୁଙ୍ଗ ନାରୀକୁ ଧନ୍ୟବାଦ ଦେଇ ଚାଲିଗଲେ ।

ସେଦିନ ରାତିରେ ରାଜା ଯେତେବେଳେ ପାରାମାଂସ ତରକାରି ଖାଇଲେ ମାଂସର ସ୍ୱାଦୁରେ ଅତ୍ୟନ୍ତ ମୁଗ୍‌ଧ ହେଲେ । ପରଦିନ ଶିକାରୀ ଦୁହିଁଙ୍କୁ ଡକାଇ ଏପରି ସୁନ୍ଦର ପାରା କେଉଁଠୁ ଆଣିଥିଲ ବୋଲି ପଚାରିଲେ । ସେ ଦୁହେଁ ଚଲୁଙ୍ଗ ନାରୀ ବିଷୟ ରାଜାଙ୍କୁ କହିଲେ । ତହୁଁ ରାଜା ତାଙ୍କର ପଶୁପକ୍ଷୀ ବିଭାଗ ମନ୍ତ୍ରୀଙ୍କୁ ପ୍ରତିଦିନ ଦୁଇଟି ଲେଖାଏଁ ପାରା ରାଜପ୍ରାସାଦକୁ ପଠାଇବାଲାଗି ଦାବି ଜଣାଇବାକୁ ଚଲୁଙ୍ଗ ନାରୀ ନିକଟକୁ ପଠାଇଲେ । ମନ୍ତ୍ରୀ ଚଲୁଙ୍ଗ ନାରୀ ନିକଟରେ ରାଜାଙ୍କ ଦାବି ଜଣାଇଲେ । ଚଲୁଙ୍ଗ ନାରୀ କହିଲା, ଏହି ପାର୍ବତ୍ୟ ପ୍ରଦେଶର ଗରିବ ଚାଷୀ ମୂଲିଆଙ୍କ ଉପରୁ ରାଜା ଯଦି କର ଛାଡ଼ କରିଦେବେ, ତେବେ ମୁଁ ପ୍ରତିଦିନ ଦୁଇଟି ଲେଖାଏଁ ପାରା ରାଜାଙ୍କ ଉଆସକୁ ପଠାଇବି । ମନ୍ତ୍ରୀ ବାଧ୍ୟହୋଇ ଏଥିରେ ରାଜି ହେଲେ । ପରଦିନ ଚଲୁଙ୍ଗ ନାରୀ ଚାଙ୍ଗ୍‌କୁ ଦୁଇଟି କାଗଜ ପାରା ଦେଇ କହିଲା, ରାଜାଙ୍କ ଉଆସରେ ଦେଇ ଆସ । ଚାଙ୍ଗ୍ କହିଲା, କ'ଣ ଏ କାଗଜ ଚଢ଼େଇ ହେବ ? ଚଲୁଙ୍ଗ ନାରୀ କହିଲା, କିଛି ବ୍ୟସ୍ତ ହେବା ଦରକାର ନାହିଁ । ରାଜାଙ୍କୁ ଦେଲାବେଳେ କାଗଜ ପାରା ଦୁଇଟିଙ୍କୁ ପବନରେ ଉଡ଼ାଇ ଦେବ । ରାଜସଭାରେ ପହଞ୍ଚି ଚାଙ୍ଗ୍ ରାଜାଙ୍କ ଆଗରେ କାଗଜ ପାରା ଦୁଇଟି ଉଡ଼ାଇ ଦେଲା । ସେ ଦୁଇଟି ସଙ୍ଗେ ସଙ୍ଗେ ଜୀବନ ପାଇ ପ୍ରକୃତ ପାରା ହୋଇଗଲେ । ମନ୍ତ୍ରୀ ଓ ରାଜକର୍ମଚାରୀମାନେ ନିଜ ନିଜ ଆସନରୁ ଉଠି ପାରା ଦୁଇଟିକୁ ଧରିଲେ । ରାଜା ରାଗିଯାଇ କହିଲେ—ଏ ମଇଳମୁଣ୍ଡିଆ ଚଷାଟା ମୋ ଉଆସକୁ କାହିଁକି ଆସୁଛି ? ପ୍ରତିଦିନ ତା' ସ୍ତ୍ରୀ ଦୁଇଟି ପାରା ଆଣି ମୋ ଉଆସକୁ ଆସିବ ବୋଲି ମୋର ଆଦେଶ ତାକୁ ଜଣାଇ ଦିଅ । ମନ୍ତ୍ରୀ ରାଜାଙ୍କ ଆଦେଶ ବଡ଼ପାଟିରେ ଘୋଷଣା କରି ଜଣେଇ ଦେଲେ । ଚାଙ୍ଗ୍ ଘରକୁ ଫେରି ରାଜାଙ୍କ ନିଷ୍ଠୁର ଆଦେଶ ଚଲୁଙ୍ଗ ନାରୀକୁ କହିଲା । ପରଦିନ ଚଲୁଙ୍ଗ ନାରୀ ଚଢ଼େଇ ଆଣି ରାଜ ଉଆସକୁ ଆସିଲା । ରାଜା ତାକୁ ଦେଖି ତା'ର ଅପୂର୍ବ ସୌନ୍ଦର୍ଯ୍ୟରେ ମୁଗ୍‌ଧ ହେଲେ । ରାଜା କହିଲେ, ତମେ ଏତେ ସୁନ୍ଦର ହୋଇ ଘରକରିଛକର ମଇଳମୁଣ୍ଡିଆ ଚଷାଟାକୁ ବିଭା

ହୋଇଛ ? ଏଠି ମୋ ପାଖରେ ରହି ମୋ ପାଟରାଣୀ ହେଉନା କାହିଁକି ? ଚତୁରୀ ନାରୀ କହିଲା, "ମୋର ସ୍ୱାମୀ ତୁମଠାରୁ କେଉଁ ଗୁଣରେ ଊଣା ଯେ ମୁଁ ତାଙ୍କୁ ପରିତ୍ୟାଗ କରିବି ।"



ସେ କାନ୍ଦି କାନ୍ଦି ଉଆସରୁ ବାହାରି ଚାଲିଗଲା । ରଜା ଅତି ରାଗିଯାଇ କହିଲେ—ତା'ର ଏତେ ସାହସ ! ସେ କହୁଛି ତା'ର ସ୍ୱାମୀ ମୋ ଠାରୁ ସବୁ ଗୁଣରେ ବଡ଼ । ତା'ହେଲେ ଆସନ୍ତାକାଲି ମୋ ସଙ୍ଗରେ ଘୋଡ଼ାଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବାକୁ ଚୁଙ୍ଗ୍‌କୁ ଜଣେଇ ଦିଅ । ଯେ ସେହି ପ୍ରତିଯୋଗିତାରେ ଜିଣିବ, ସେ ଚତୁରୀ ନାରୀକୁ ପାଇବ । ଚୁଙ୍ଗ୍ ଏ ଖବର ପାଇ ବିଚଳିତ ହୋଇଗଲା । କିନ୍ତୁ ଚତୁରୀ ନାରୀ କହିଲା, ବ୍ୟସ୍ତ ହେବା ଉଚିତ ନୁହେଁ । ସେ କାଗଜ ଓ ବାଉଁଶରେ ଗୋଟିଏ ଘୋଡ଼ା ତିଆରି କଲା । ସେ କାଗଜ ତିଆରି ଘୋଡ଼ାକୁ ଟିକିଏ ପେଲିଦେଲା । ତତ୍‌କ୍ଷଣାତ୍ ସେଇଟି ଗୋଟିଏ ସୁନ୍ଦର ଧଳା ଘୋଡ଼ା ହୋଇଗଲା । ପରଦିନ ଘୋଡ଼ାଦୌଡ଼ ପ୍ରତିଯୋଗିତା ହେଲା । ବହୁତ ଲୋକ ଦେଖିବାକୁ ଜମା ହେଲେ । ପ୍ରଥମେ ରାଜାଙ୍କ କଳାଘୋଡ଼ା

Digitized by srujanika@gmail.com

ଖୁବ୍ ଜୋରରେ ଆଗଭର ହୋଇ ଦୌଡ଼ିବାକୁ ଲାଗିଲା । ଦୁଷ୍ଟ ରାଜା ଜିଣିବା ଆଶା ନଷ୍ଟ ନ କରି ପଛରୁ ଅନେଇ ଗୃଙ୍ଗ୍‌କୁ ଥଟ୍ଟା କରୁଥାନ୍ତି । ଦେଖଣାହାରୀ ଲୋକମାନେ ଭାବୁଥାନ୍ତି ଗୃଙ୍ଗ୍ ବୋଧହୁଏ ହାରିଯିବ । କିନ୍ତୁ ଦୌଡ଼ର ନିର୍ଦ୍ଦିଷ୍ଟ ହୋଇଥିବା ଶେଷ ଜାଗା ପାଖହୋଇ ଆସିବା ବେଳକୁ ହଠାତ୍ ଗୃଙ୍ଗ୍‌ର ଧଳା ଘୋଡ଼ାଟି କୁଦାମାରି ଜୋରରେ ଝପ୍‌ଟି ଯାଇ ରଜାଙ୍କ କଳା ଘୋଡ଼ାକୁ ଟପିଗଲା । ଦୌଡ଼ରେ ଗୃଙ୍ଗ୍ ଜିତିଲା । ଲୋକମାନେ ଆନନ୍ଦରେ ତାଳିମାରି ପାଟି କରିବାକୁ ଲାଗିଲେ—ସାବାସ୍ ଗୃଙ୍ଗ୍ ସାବାସ୍ । ଦୁଷ୍ଟ ରାଜା ରାଗିଯାଇ ଗୃଙ୍ଗ୍‌କୁ କହିଲା, "ଏତିକରେ କ'ଣ ମୁଁ ତତେ ଛାଡ଼ି ଦେଉଛି । କାଲି ଆମ ଦୁହିଁଙ୍କର ନୌକା ଚାଳନା ପ୍ରତିଯୋଗିତା ହେବ । ତୁ ଯଦି ଜିଣିବୁ ତୋ ସ୍ତ୍ରୀକୁ ରଖିବୁ । ହାରିଲେ ମୁଁ ତରୁଣୀ ନାରୀକୁ ନେଇଯିବି ।" ସେଦିନ ସାରା ରାତି ଅନିଦ୍ରା ହୋଇ ଗୃଙ୍ଗ୍ ଓ ତା'ର ସ୍ତ୍ରୀ କାଠରେ ଗୋଟିଏ ଶ୍ରେଷ୍ଠ ନୌକା ତିଆରି କଲେ । ନୌକାର ପଛଭାଗକୁ ସେମାନେ ଲୁହା ଲଗାଇ ଅତି ଦମ୍ଭ ଓ ଶକ୍ତିଶାଳୀ କରିଥିଲେ । ଏହା ତରୁଣୀ ନାରୀର ବୁଦ୍ଧି । ନଈରେ ନୌକା ଚାଳନା ପ୍ରତିଯୋଗିତା ଆରମ୍ଭ ହେଲା । କୂଳରେ ଠିଆହୋଇ ବହୁତ ଲୋକ ଓ ରାଜକର୍ମଚାରୀମାନେ ଦେଖୁଥାନ୍ତି । ଗୃଙ୍ଗ୍ ଶ୍ରେଷ୍ଠ ନାଆଟି ଚଞ୍ଚଳ ବାହିନେଲା । ପଛରେ ରାଜା ନୌକା ବାହୁ ଥାଆନ୍ତି । ଦୁଷ୍ଟ ରାଜା ଗୃଙ୍ଗ୍ ନାଆର ପଛପଟେ ଧକ୍‌କା ଲଗାଇ ନୌକା ଓଲଟାଇ ଦେଇ ଗୃଙ୍ଗ୍‌କୁ ବୁଡ଼ାଇ ମାରିବାକୁ ଚେଷ୍ଟା କରୁଥାନ୍ତି । ଲୋକମାନେ ପାଟିକରି ବାରଣ କରୁଥାନ୍ତି । କିନ୍ତୁ ଦୁଷ୍ଟ ରାଜା ନିଜ ବଡ଼ ନୌକାକୁ ଖୁବ୍ ଜୋର୍‌ରେ ବାହିନେଇ ଗୃଙ୍ଗ୍ ନୌକାର ପଛପଟେ ଜୋର୍‌ରେ ଧକ୍‌କା ଲଗାଇ ଦେଲା । ଗୃଙ୍ଗ୍ ନୌକାର ପଛପଟ ଲୁହାରେ ତିଆରି ହୋଇ ଦମ୍ଭ ଥିବାରୁ ତା'ର କିଛି କ୍ଷତି ହେଲା ନାହିଁ । ବରଂ ରଜାଙ୍କ ନୌକାଟି ଭାଙ୍ଗିଯାଇ ଓଲଟି ପଡ଼ିଲା । ରାଜା ପାଣିରେ ପଡ଼ିଯାଇ ପାଞ୍ଚ ଛଅ ଢୋକ ପାଣି ପିଇଗଲେ । ରାଜକର୍ମଚାରୀ କେତେଜଣ ପହଁରିଯାଇ ରାଜାଙ୍କୁ ଉଦ୍ଧାର କଲେ । ପରାଜିତ ରାଜା ଅପମାନ ଯୋଗୁଁ ରାଗରେ ଜଳିଯାଇ ଗୃଙ୍ଗ୍‌କୁ କହିଲେ—"ତୋ ଯୋଗୁ ମୋ ରାଜପୋଷାକ ଓଦା ହୋଇ ନଷ୍ଟ ହୋଇଗଲା । ତତେ ଗୋଟିଏ ଏହାଠୁଁ ସୁନ୍ଦର ପୋଷାକ ତିଆରି କରି ଆଣି ଦେବାକୁ ହେବ । ରାଜପୋଷାକଟି ଚଢ଼େଇ ପରରେ ତିଆରି

Digitized by srujanika@gmail.com

ହୋଇଥିବ, ସୂର୍ଯ୍ୟ ଓ ସମୁଦ୍ରର ଚିତ୍ର ଥିବ । ତିନିଦିନ ଭିତରେ ଏପରି ପୋଷାକ ଦେବାକୁ ହେବ । ତିନିଦିନ ମଧ୍ୟରେ ନ ଦେଇ ପାରିଲେ ତୋର ସ୍ତ୍ରୀ ମୋର ହେବ ।”

ଗୃଙ୍ଗ୍ ଦୁଃଖରେ ସବୁକଥା ତା’ ସ୍ତ୍ରୀକୁ କହିଲା । ଚନ୍ଦ୍ରୁଣୀ ନାଣୀ ଗୃଙ୍ଗ୍‌କୁ ବିଭିନ୍ନ ପ୍ରକାର କାଗଜ-ଚଢ଼େଇ ତିଆରି କରିବାରେ ତାକୁ ସାହାଯ୍ୟ କରିବାକୁ କହିଲା । ଦୁହେଁ ବସି ପାରା, କୁକୁଡ଼ା, ବତକ, ହଂସ, ମୟୂର, କୋଇଲି, ଶୁଆ, ହଳଦିବସନ୍ତ ପ୍ରଭୃତି ନାନାପ୍ରକାର ଚଢ଼େଇ କାଗଜରେ ତିଆରି କଲେ । ଚନ୍ଦ୍ରୁଣୀ ନାଣୀ ସେଗୁଡ଼ିକୁ ଆକାଶକୁ ଉଡ଼ାଇ ଦେଇ ଗୀତ ବୋଲିଲା—

ଉଡ଼ି ଯାଆ ମୋର ଚଢ଼େଇ ଦଳ,
ଝାଡ଼ିଦେଇ ଭଲ ଭଲକା ପର ।

ଚଢ଼େଇଗୁଡ଼ିକ ଚନ୍ଦ୍ରୁଣୀ ନାଣୀର ବୋଲ ମାନି ତା’ କଥା ମୁତାବକ ନାନା ରଙ୍ଗର ପର ଝାଡ଼ିଦେଇ ଗଗନରେ ଉଡ଼ିଗଲେ । ଭଲ ଭଲ ରଙ୍ଗର ଓ ବିଭିନ୍ନ ଆକାରର ଅନେକ ଚଢ଼େଇ ପର ତଳେ ଗଦା ହୋଇଗଲା । ଗୃଙ୍ଗ୍ ସେଗୁଡ଼ିକ ସାଉଁଟିବାକୁ ଲାଗିଲା । ଚନ୍ଦ୍ରୁଣୀ ନାଣୀ ଅରଟରେ ସୂତା କାଟିଲା । ତା’ପରେ ସୂତାରେ କନା ବୁଣିଲା । କନା ଓ ନାନା ରଙ୍ଗର ଚଢ଼େଇ ପରରେ ପୋଷାକ ତିଆରି କଲା । କନାରେ ବିଭିନ୍ନ ପ୍ରକାର ଚିତ୍ର ଆଙ୍କିଲା । ଏହି ସବୁ କାମ କରିବାରେ ଦୁଇଦିନ ଶେଷ ହୋଇ ତିନିଦିନ ସନ୍ଧ୍ୟା ହେବାକୁ ଅଳ୍ପ ସମୟ ବାକି ଅଛି । ପୋଷାକରେ ସୂର୍ଯ୍ୟ ଓ ସମୁଦ୍ରର ଚିତ୍ର ହୋଇ ପାରିନି । ସଞ୍ଜ-ବେଳେ ରାଜାଙ୍କ ପାଖରେ ପୋଷାକ ନ ପହଞ୍ଚିଲେ ଗୃଙ୍ଗ୍ ସ୍ତ୍ରୀକୁ ଦୁଷ୍ଟ ରାଜା ନେଇଯିବ । ଏଥିରେ ଗୃଙ୍ଗ୍ ଅଧୀର ହୋଇ କାନ୍ଦ ପକାଇଲା । ତା ଆଖିରୁ ଧାର ଧାର ଲୁହ ଝରି ସେହି ପୋଷାକ ଉପରେ ପଡ଼ିଲା । ଗୃଙ୍ଗ୍‌ର ଲୁହଧାର ପୋଷାକରେ ପଡ଼ି ପୋଷାକରେ ସାଗରର ଚିତ୍ର ହୋଇଗଲା । ଚନ୍ଦ୍ରୁଣୀ ନାଣୀ ସୂତାକଟା, ଲୁଗାବୁଣା ଓ ଚିତ୍ର ଆଙ୍କିବାରେ ବହୁତ ପରିଶ୍ରମ କରି ତିନିଦିନ ହେଲା ଅନବରତ ଛୁଞ୍ଚିଧରି କାମ କରିବାରୁ ତା’ ହାତ ଫାଟିଯାଇ ରକ୍ତ ବୋହିବାକୁ ଲାଗିଲା । ସେହି ରକ୍ତ ପୋଷାକରେ ପଡ଼ି ପୋଷାକରେ ସୂର୍ଯ୍ୟର ଚିତ୍ର ହୋଇଗଲା । ପୋଷାକ

Digitized by srujanika@gmail.com

ତିଆରି ସରିଗଲା । ଗୁଙ୍ଗ୍ ଓ ତା'ର ସ୍ତ୍ରୀ ପୋଷାକ ନେଇ ସକାଳେ ରାଜାଙ୍କ ପାଖକୁ ଗଲେ ।

ସୁନ୍ଦର ରାଜପୋଷାକ ପାଇ ରାଜା ଭାରି ଖୁସି ହେଲେ । କିନ୍ତୁ ସେହି ଦୁଷ୍ଟରାଜା କହିଲା, ମୁଁ ମୋ ଆଖି ଆଗରେ ଦେଖିବାକୁ ଚାହେଁ ସେ ଆଉ ଏକ ପୋଷାକ ଏଠି ତିଆରି କରୁ । ଚତୁର ନାରୀ କହିଲା— ମହାରାଜ, ଆପଣ ଯଦି ଚାହିଁବେ ମୁଁ ଏହିପରି ଦଶଟା ପୋଷାକ ମଧ୍ୟ ତିଆରି କରିଦେଇ ପାରିବି; କିନ୍ତୁ ଏଇଟିକୁ ଆଗ ପିନ୍ଧି ଦେଖନ୍ତୁ, ଆପଣଙ୍କୁ କିପରି ସାଜୁଛି । ଆମେ ଦୁହେଁ କେତେ ପରିଶ୍ରମ କରି ଏଇଟି ଆପଣଙ୍କ ପାଇଁ ତିଆରି କରିଛୁ । ଆପଣ ଟିକିଏ ପିନ୍ଧନ୍ତୁ । ରାଜା ହସି ହସି କହିଲେ, ତମେ ଯେତେବେଳେ କହୁଛ ଆଚ୍ଛା ମୁଁ ପିନ୍ଧୁଛି । ସେହି ଚକଚକିଆ ନୂଆ ରାଜପୋଷାକ ପିନ୍ଧି ରାଜା ଗର୍ବରେ ଛାତି ଫୁଲାଇ ସୁନ୍ଦରୀ ଚତୁର ନାରୀର ହାତ ଧରି ନଚାଇବା ଲାଗି ତା' ପାଖକୁ ଆଗେଇ ଆସିଲା ବେଳକୁ ଚତୁର ନାରୀ ଜୋର୍‌ରେ ଦୀର୍ଘନିଃଶ୍ୱାସ ରାଜାଙ୍କ ପୋଷାକ ଆଡ଼କୁ ଛାଡ଼ିଲା । ଫଳରେ ହଠାତ୍ ପୋଷାକରେ ଥିବା ସାଗରର ଢେଉ ଛବି ପ୍ରକୃତ ସାଗର ଢେଉ ହୋଇଗଲା । ସେହି ଲହରୀମାଳା ରାଜାଙ୍କୁ ଭସାଇ ନେଇଗଲା । ମନ୍ତ୍ରୀ ଓ ରାଜକର୍ମଚାରୀମାନେ ରାଜାଙ୍କୁ ରକ୍ଷା କରିବାକୁ ଯାଇ ନହଡ଼ରେ ପଶିବାରୁ ଉତ୍ତାଳତରଙ୍ଗ ସମସ୍ତଙ୍କୁ ଭସାଇ ନେଇଗଲା । ଗୁଙ୍ଗ୍ ଓ ତା'ର ସ୍ତ୍ରୀ ଚତୁର ନାରୀ ରାଜାର ଅନ୍ତଃପୁରରୁ ବହୁତ ନାରୀଙ୍କୁ ଉଦ୍ଧାର କଲେ । ସେମାନଙ୍କୁ ଦୁଷ୍ଟରାଜା ଜବରଦସ୍ତି ଧରିନେଇ ନିଜ ଅନ୍ତଃପୁରରେ ରଖିଥିଲା । ସମସ୍ତେ ମୁକ୍ତି ପାଇଲେ । ଅନ୍ଧାର ରାତି ସେତେବେଳକୁ ପାହି ଆସୁଥିଲା । ସେହି ସାଗର ବେଳା-ଭୂମିରେ ଠିଆହୋଇ ସମସ୍ତେ ଦେଖିଲେ ସୁନ୍ଦର ଲାଲ ସୂର୍ଯ୍ୟ ଉଇଁ ଆସୁଛନ୍ତି । ଲକ୍ଷ ଲକ୍ଷ ବିଭିନ୍ନ ପ୍ରକାର ପକ୍ଷୀ ମୁକ୍ତ ଆକାଶରେ ନବ ପ୍ରଭାତର ଶୁଭ ସଙ୍ଗୀତ ଗାଇ ବୁଲୁଥିଲେ—

ପାହିଲାଣି ରାତି
    ଉଠେ ଲାଲ ସୂର୍ଯ୍ୟ,
ବାଜିଉଠେ ଶୁଣ
    ମୁକତିର ତୂର୍ଯ୍ୟ ।

Digitized by srujanika@gmail.com

# ପର୍ବତକୁମାର

ପୁରାକାଳର କଥା । ଚୀନ ଦେଶରେ ବୁଢ଼ାଟିଏ ଓ ବୁଢ଼ୀଟିଏ ଥାଆନ୍ତି । ତାଙ୍କର ଗୋଟିଏ ବୋଲି ପୁଅ । ଦେଖିବାକୁ ଭାରି ସୁନ୍ଦର । ତା'ର ଏକ ଧନୁ ଓ ଲୁହା ଶର ଥିଲା । ପ୍ରତିଦିନ ପାହାଡ଼ ପର୍ବତ



ଉପରକୁ ଯାଇ ସେ ଶିକାର କରେ । ବାପ ମା'ଙ୍କ ପାଇଁ ଫଳମୂଳ, ପଶୁ ପକ୍ଷୀର ମାଂସ ଆଦି ଆଣେ । ସବୁଦିନେ ପାହାଡ଼, ପର୍ବତ, ବଣ-ଜଙ୍ଗଲରେ ବୁଲିବୁଲି କରି ଶିକାର ଖୋଜିବା ତା'ର କାମ । ତା'ର ଲକ୍ଷ୍ୟ ଅବ୍ୟର୍ଥ । ପର୍ବତ ଉପରେ ତା'ର ସବୁବେଳେ ଜୀବନ କଟୁଥିବାରୁ ସେଠାକାର ଲୋକେ ତାକୁ ପର୍ବତକୁମାର ବୋଲି ଡାକନ୍ତି । ଏମିତି ଅଳ୍ପ ମଜାରେ ଡାକୁ ଡାକୁ ସତକୁ ସତ ତା'ର ନାମ ପର୍ବତକୁମାର ହୋଇଗଲା ।

Digitized by srujanika@gmail.com

ସେ ଦେଶର ରାଣୀ ଅତ୍ୟନ୍ତ ଖଳ ପ୍ରକୃତିର । ସେ ଅତି ନିଷ୍ଠୁରୀ ମଧ୍ୟ । ସଦାସର୍ବଦା ପ୍ରଜାମାନଙ୍କୁ ହଇରାଣ ହରକତ କରିବାକୁ ସେ ରାଜାଙ୍କୁ ପରାମର୍ଶ ଦିଅନ୍ତି । ଅବୁଝା ରଜା ମଧ୍ୟ ତାଙ୍କ କଥାରେ ଚାଲନ୍ତି । ଦିନେ ରାଣୀ ରାଜାଙ୍କୁ କହିଲେ, "ଆମ ରାଜ୍ୟର ଉତ୍ତର-ପଶ୍ଚିମରେ ଥିବା ହ୍ରଦରେ ପଚାଶ ଫୁଟ ଲମ୍ବର ଏକ ବଡ଼ ଜଳ-ରାକ୍ଷସ ଅଛି । ପ୍ରତିଦିନ ମଧ୍ୟାହ୍ନ ସମୟରେ ସେ ପାଣିରୁ ବାହାରି ଆସେ । ତମେ କାହାକୁ ପଠାଇ ଜଳ-ରାକ୍ଷସକୁ ମାରିବା ଉଚିତ । ଆମେ ତା' ଚମଡ଼ାରେ ଏକ ପୋଷାକ ତିଆରି କରନ୍ତେ । ସେହି ପୋଷାକ ପିନ୍ଧିଲେ ତମକୁ ଖରାଦିନେ ଥଣ୍ଡା ଲାଗିବ ଓ ଶୀତଦିନରେ ଉଷୁମ ଲାଗିବ ।" ରାଜା ସଙ୍ଗେ ସଙ୍ଗେ ଶହେ ଜଣ ସୈନ୍ୟଙ୍କୁ ହ୍ରଦ ପାଖକୁ ପଠାଇଲେ । ସେମାନଙ୍କୁ ଆଦେଶ ଦିଆଗଲା ଦୁଇ ସପ୍ତାହ ମଧ୍ୟରେ ଜଳ-ରାକ୍ଷସକୁ ମାରି ରାଜାଙ୍କ ପାଖକୁ ତା'ର ମୃତଦେହ ଆଣିବାକୁ । ଯଦି ପନ୍ଦର ଦିନ ମଧ୍ୟରେ ଏହି କାମ କରି ନ ପାରିବେ ତେବେ ସେମାନଙ୍କର ମୁଣ୍ଡକାଟ ହେବ ।

ପରଦିନ ସକାଳୁ ସୈନ୍ୟମାନେ ସେହି ହ୍ରଦ ପାଖକୁ ଚାଲିଲେ । ସେଠାରେ ପହଞ୍ଚି ବଣବୁଦା ଉହାଡ଼ରେ ଲୁଚି ରହି ହ୍ରଦ ଜଳକୁ ଲକ୍ଷ୍ୟ ରଖିଲେ । ମଧ୍ୟାହ୍ନରେ ସତକୁସତ ଜଳ-ରାକ୍ଷସ ହ୍ରଦରୁ ବାହାରିଲା । ହ୍ରଦ କୂଳରେ ଖରାରେ ବସି ରହିଲା । ସୈନ୍ୟମାନେ ଏକ ସଙ୍ଗରେ ସେମାନଙ୍କ ଧନୁରୁ ଶର ତା' ଉପରକୁ ଛାଡ଼ିଲେ; କିନ୍ତୁ ଅଧିକାଂଶଙ୍କର ଶର ତା' ଦେହରେ ବାଜିଲାନି । କେତେଜଣଙ୍କର ତୀର ତା' ଦେହରେ ବାଜି ସେମିତି ତଳେ ପଡ଼ିଗଲା । ଜଳ-ରାକ୍ଷସର ଶରୀର ଭେଦ କରି ପାରିଲାନି ।

ପ୍ରତିଦିନ ଏହି ଘଟଣା ଘଟିଲା । ଦୁଇ ସପ୍ତାହ ପ୍ରାୟ ଶେଷ ହେବାକୁ ବସିଲା । ଆଉ ଦୁଇଦିନ ବାକି ଥାଏ । ସୈନ୍ୟମାନଙ୍କ ମଧ୍ୟରେ ଭୟ ଲାଗିଲେଣି ପଡ଼ିଗଲା । ସେଦିନ ଯୋଗକୁ ପର୍ବତକୁମାରି ହ୍ରଦ ନିକଟ ପାହାଡ଼କୁ ଆସିଥିଲା । ତାକୁ ଦେଖି ସୈନ୍ୟମାନେ ଖୁସି ହେଲେ । ଆଗରୁ ତା' କଥା ଲୋକମୁଖରୁ ଶୁଣିଥିଲେ । ସମସ୍ତେ ପାହାଡ଼ ଉପରକୁ ତା' ନିକଟକୁ ଧାଇଁଲେ । ତାକୁ ଅନୁରୋଧ କଲେ ସେମାନଙ୍କୁ ସାହାଯ୍ୟ କରିବାକୁ । ଏହି କାମରେ ସାହାଯ୍ୟ ନ କଲେ ସେମାନଙ୍କ ଜୀବନ ଯିବ ।

Digitized by srujanika@gmail.com

ପଞ୍ଚତ କୁମାର ଜଣେ ପରୋପକାରୀ ଯୁବକ । ବିପଦରେ ପଡ଼ିଥିବା ଲୋକଙ୍କୁ ସାହାଯ୍ୟ କରିବାକୁ ସେ ଭଲପାଏ । ତେଣୁ ସେ ରାଜ ଧୋଇଗଲା । ସେ ବଣବୁଦା ଉହାଡ଼ରେ ଲୁଚି ରହିଲା । ସେଦିନ ଦି'ପ୍ରହର ବେଳେ ରାକ୍ଷସ ଗର୍ଜନ କରି ଜଳରୁ ବାହାରି ଆସି ହ୍ରଦକୂଳରେ ଖରାରେ ବସିଲା । ପଞ୍ଚତ କୁମାର ନିଜ ଧନୁକୁ ପୂରି ଟଙ୍କାରି ତୀକ୍ଷ୍ଣ ଶର ଜଳ-ରାକ୍ଷସର ଗୁଣ୍ଡିକୁ ଲକ୍ଷ୍ୟ କରି ଛାଡ଼ିଲା । ଜଳ-ରାକ୍ଷସ ଘୋର ରଡ଼ି ଛାଡ଼ି ମରିଗଲା । ସୈନ୍ୟଗଣ ଆନନ୍ଦରେ କୋଳାହଳ କଲେ । ଧନ୍ୟ ପଞ୍ଚତ କୁମାର । ଧନ୍ୟ ଧନ୍ୟ କହି କେତେଜଣ ସୈନ୍ୟ ତାକୁ କାନ୍ଧରେ ବସାଇ ଉପରକୁ ଟେକି ଆନନ୍ଦରେ ନାଚିଲେ । ପଞ୍ଚତ କୁମାର କହିଲା, "ମୋର ପ୍ରଶଂସା କରିବା ଦରକାର ନାହିଁ । ମୁଁ କେବଳ ଗୋଟିଏ ଅନୁରୋଧ କରୁଛି, ତୁମ୍ଭେମାନେ ରାଜାଙ୍କୁ କହିବନି ମୁଁ ଜଳ-ରାକ୍ଷସକୁ ମାରିଛି ବୋଲି ।" ତା'ପରେ ସେ ସେମାନଙ୍କଠୁଁ ବିଦାୟ ନେଇ ନିଜ ଘରକୁ ଫେରିଗଲା ।

ସାମରିକ ଅଫିସର ଓ ସୈନିକମାନେ ଖୁସିମନରେ ମଲା ରାକ୍ଷସର ଶବକୁ ନେଇ ରାଜପ୍ରାସାଦ ଅଭିମୁଖେ ଚାଲିଲେ । ରାଜପ୍ରାସାଦରେ ପହଞ୍ଚି ରାଜାଙ୍କ ଆଗରେ ଜଳ-ରାକ୍ଷସ ଶବ ରଖିଲେ । ରାଜା ଆଦେଶ ଦେଲେ, "ଏହାର ଚମଡ଼ା ଉତାରି ଦିଅ । ଏହାର ଚମଡ଼ାରେ ମୋ ପାଇଁ ପୋଷାକ ତିଆରି କର ।" ସୈନ୍ୟମାନେ ମଲା-ରାକ୍ଷସ ଦେହରୁ ଚମଡ଼ା ଉତାରିବାରେ ଲାଗି ପଡ଼ିଲେ; କିନ୍ତୁ କେହି ଚମଡ଼ା ଉତାରି ପାରିଲେନି । ଯେତେ ଧାରୁଆ ଛୁରୀ ହାବି ଚେଷ୍ଟାକଲେ ବି ରାକ୍ଷସ ଦେହରେ ତାହା ଗଳିଲାନି । ରାଜା ଏହା ଦେଖି ରାଗି ଉଠିଲେ । ରଜା କହିଲେ, "ତୁମ୍ଭେମାନେ ଯଦି ରାକ୍ଷସକୁ ପ୍ରକୃତରେ ମାରିଛ, ତା'ର ଚମଡ଼ା ଉତାରି ପାରୁନ କାହିଁକି ? ମୁଁ ଭାବୁଛି ଆଉ କୌଣସି ଲୋକ ରାକ୍ଷସକୁ ମାରିଛି । ତୁମ୍ଭମାନଙ୍କ ମଧ୍ୟରୁ କେହି ହେଲେ ରାକ୍ଷସକୁ ମାରି ନାହାଁ । ମତେ ସତ କୁହ, କିଏ ରାକ୍ଷସକୁ ମାରିଛି ? ସତ ନ କହିଲେ ତୁମ୍ଭମାନଙ୍କୁ ଗୁରୁତର ଦଣ୍ଡ ଦିଆଯିବ ।"

ସେମାନେ ବାଧ୍ୟହୋଇ ସତ କହିଲେ । ଫଳରେ ସଙ୍ଗେ ସଙ୍ଗେ ପଞ୍ଚତ କୁମାରକୁ ଧରି ରାଜବାଟୀକୁ ଆଣିବାକୁ ଲୋକ ପଠାଗଲା ।

Digitized by srujanika@gmail.com

ଯେତେବେଳେ ସେ ଆସି ରାଜାଙ୍କୁ ସାକ୍ଷାତ କଲା ରାଜା ଆଦେଶ ଦେଲେ ରାକ୍ଷସ ଦେହରୁ ଚମଡ଼ା ଉତାରିବାକୁ ।

ପର୍ବତକୁମାର ସଙ୍ଗେ ସଙ୍ଗେ ରଜାଙ୍କ ଆଦେଶ ପାଳନ କଲା । ଅସୁର ଦେହରୁ ଚମଡ଼ା ଖୋଲିବା କାମ ସେ ଅଳ୍ପ ସମୟରେ ଶେଷକଲା । ସେହି ଚମଡ଼ାରେ ରାଜାଙ୍କ ଲାଗି ପୋଷାକ ତିଆରି ହେଲା । ରାଜା ସେହି ପୋଷାକ ପିନ୍ଧି ଖୁସିହୋଇ ରାଣୀଙ୍କୁ ଦେଖାଇବାକୁ ଅନ୍ତଃପୁରକୁ ଗଲେ । ରାଣୀ ଖୁସି ହେଲେ । କିନ୍ତୁ ତାଙ୍କର ତ ପ୍ରକୃତ ଖରାପ । ସେ କହିଲେ ଯେ ପୋଷାକ ସିନା ହେଲା, ଏହି ପୋଷାକ ସାଙ୍ଗକୁ ରାଜାଙ୍କର ଟୋପି ନାହିଁ । ଆଉ ଏକ ରାକ୍ଷସର କୁହୁକ-ଟୋପି ଅଛି । ସେହି ଟୋପିଟି ଅଣାଇ ପାରିଲେ ଯାଇ ସାଙ୍ଗକୁ ଠିକ୍ ହୁଅନ୍ତା । ସେହି ଟୋପି ଆଣି ଏ ପୋଷାକ ସହିତ ପିନ୍ଧିଲେ କେହି ରଜାଙ୍କ ସମକକ୍ଷ ହୋଇପାରିବେନି । ରାଜା କହିଲେ, "କଅଣ କହିଲ, ଅସୁର ମଥାର କୁହୁକ-ଟୋପି ? କିଏ ସାହସ କରିବ ଅସୁର ମୁଣ୍ଡରୁ ଟୋପି ଆଣିବାକୁ ?"

ରାଣୀଙ୍କର ଅସଲ ଉଦ୍ଦେଶ୍ୟ ହେଉଛି, ପର୍ବତକୁମାର ପରି ବିଖ୍ୟାତ ଯୋଦ୍ଧା, ବାଣୁଆ ଓ ସାହସୀ ବ୍ୟକ୍ତି ରାଜାରାଣୀଙ୍କ ପକ୍ଷେ ବିପଦର କାରଣ । ତାକୁ ରାକ୍ଷସ ମଥାର କୁହୁକ-ଟୋପି ଆଣିବାକୁ ପଠାଇଲେ ରାକ୍ଷସ ତାକୁ ମାରି ଖାଇବ । ଫଳରେ ରାଜାରାଣୀଙ୍କ ଭୟ ଦୂର ହେବ । ରାଣୀ କହିଲେ, "ଏ କାମଟି ବଡ଼ କଠିଣ । ମୋ ମତରେ ତମେ ପର୍ବତକୁମାରକୁ ଏ କାମରେ ପଠାଅ ।"

ରାଜା ପର୍ବତକୁମାରକୁ ପୁଣି ଡକାଇଲେ । ସେ ତାଙ୍କ ପାଖରେ ପହଞ୍ଚିଲା । ରାଜା କହିଲେ, "ଆମ ଦେଶର ଉତ୍ତର-ପୂର୍ବ ଦିଗ ଉଚ୍ଚ ପର୍ବତମାଳାରେ ଏକ ବଡ଼ ଅସୁର ଅଛି । ତା' ପାଖକୁ ଯାଅ । ତାହାର କୁହୁକ-ଟୋପି ଆଣି ମତେ ଦିଅ । ତୁମେ ଯଦି ଏ କାମ କରି ନ ପାରି ତୁମର ମୁଣ୍ଡକାଟ ହେବ ।

ପର୍ବତକୁମାର ନିଜ ଘୋଡ଼ାରେ ଚଢ଼ି ଉଚ୍ଚ ପର୍ବତ, ପାହାଡ଼, ନଦୀ, ନାଳ, ଘଞ୍ଚ ବଣଜଙ୍ଗଲ ଅତିକ୍ରମ କରି ଦୂରକୁ ଅଗ୍ରସର ହେଲା । ବହୁଦୂର ଗଲାପରେ ସେ ଏକ ସୁନ୍ଦର ରାଜନଅର ଦେଖିଲା । ଘୋଡ଼ାରୁ

Digitized by srujanika@gmail.com

ଓହ୍ଲାଇଲା । ଘୋଡ଼ାକୁ ଏକ ଗଛରେ ବାନ୍ଧିଲା । ନଅର ଭିତରକୁ ଗଲା । ନଅର ମଧ୍ୟରେ ତିନିଜଣ ଝିଅ ଥିଲେ । ଜଣେ କାନ୍ଦୁଥିଲା, ଆଉ ଜଣେ ଗୀତ ଗାଉଥିଲା ଓ ତୃତୀୟ ଜଣକ ହସୁଥିଲା । ପର୍ବତକୁମାର ଏହାର ରହସ୍ୟ ବୁଝିପାରିଲାନି । ତେଣୁ ସେ ଏହାର କାରଣ ପଚାରିଲା । ସେମାନେ କହିଲେ, "ଆମେ ପକ୍ଷୀରାଣୀ 'ବଗୁଟି ବିହଗ'ର ସାନଝିଅ ତିନିଜଣ । କିଛିଦିନ ତଳେ ଉତ୍ତର-ପୂର୍ବ ଦିଗରୁ ଏକ ମସ୍ତବଡ଼ ସାପ ଆସି ଆମର ତେର ଜଣ ବଡ଼ ଭଉଣୀଙ୍କୁ ଦିନକୁ ଗୋଟିଏ ଲେଖାଏଁ ଗିଳି ଖାଇଗଲା । ମା' ତା' ସହିତ ଲଢ଼େଇ କଲା; କିନ୍ତୁ ତାକୁ ପାରିଲାନି । ଏହାପରେ ଆମ ତିନିଜଣ, ଜଣକ ପରେ ଜଣଙ୍କ ପାଳି ପଡ଼ିବ । ଯେଉଁ ବାଳକାଟି କାନ୍ଦୁଥିଲା ଆଜି ତା'ର ପାଳି । ଆଜି ତାକୁ ସାପ ଖାଇବ । ଯେଉଁ ଝିଅଟି ଗୀତ ଗାଉଥିଲା, ତା'ର ପାଳି ଆସନ୍ତା କାଲି । ଯିଏ ହସୁଥିଲା ତା'ର ପାଳି ପରହିଦିନ ।" ପର୍ବତକୁମାର କହିଲା—ଭୟ କର ନାହିଁ । ମୁଁ ସେହି ଦୁଷ୍ଟ ସାପକୁ ମାରିବି ।



ତା'ପରେ ପର୍ବତକୁମାର ଘୋଡ଼ାରେ ତିନି ଝିଅଙ୍କୁ ବସାଇ ନିଜେ ଘୋଡ଼ା ଚଢ଼ି ଉତ୍ତର-ପୂର୍ବ ଦିଗକୁ ସାପ ରହୁଥିବା ଅଞ୍ଚଳ ଆଡ଼େ ଛୁଟିଲା । ସାପର ରହିବା ଜାଗାରେ ପହଞ୍ଚିବାରୁ ହଠାତ୍ ଆକାଶ

Digitized by srujanika@gmail.com

ମେଘୁଆ ହେଲାପରି ଅନ୍ଧାର ହେଲା ଓ ଧୂଳିବାଲି ଉଡ଼ିଲା । ଏକ ମସ୍ତବଡ଼ ସାପ ତା'ର ପ୍ରକାଣ୍ଡ ପାଟି ମେଲାକରି ସୁ ସୁ ଗର୍ଜନ କରି ପର୍ବତକୁମାର ଆଡ଼କୁ ଧାଇଁ ଆସିଲା । ପର୍ବତକୁମାର ତତ୍‌କ୍ଷଣାତ୍ ତା'ର ଧନୁରେ ଶର ଯୋଖି ଠିକ୍ ଲକ୍ଷ୍ୟ କରି ସାପର ମେଲାପାଟି ଭିତରକୁ ମାରିଲା । ସାପ ଯନ୍ତ୍ରଣାରେ ଛଟପଟ ହୋଇ ମରିଗଲା । ଝିଅ ତିନିଜଣ ଓ ପର୍ବତ-କୁମାର ମଲା ସାପକୁ ଦେଖୁଛନ୍ତି, ଏପରି ସମୟରେ ଏକ ଶ୍ରେଷ୍ଠ ଧଳା ବଡ଼ଦଉଳ ଆକାଶରେ ସେମାନଙ୍କ ଆଡ଼କୁ କଏ ଉଡ଼ି ଆସିଲା ? ଏହା ଭୂଇଁ ଉପରକୁ ନଇଁ ଆସିଲା ଏବଂ ସଙ୍ଗେ ସଙ୍ଗେ ଏକ ସୁନ୍ଦର ବଗଟ ଚନ୍ଦ୍ରେଇ ହୋଇଗଲା । ସେ ବଗଟ ପକ୍ଷୀଟି ଆଉ କେହି ନୁହେଁ, ସେ ହେଉଛୁ ପକ୍ଷୀରାଣୀ—ଏଇ ତିନି ଝିଅଙ୍କର ମା' । 'ଏ ଯୁବକଟି କିଏ ?' ସେ ତା'ର ତିନିଝିଅଙ୍କୁ ପଚାରିଲା । ସେମାନେ ଉତ୍ତର ଦେଲେ, "ମା', ଏ ବୀର ଯୁବକ ସେହି ଦୁଷ୍ଟ ସାପକୁ ମାରି ଆମ ଜୀବନ ରକ୍ଷା କରିଛନ୍ତି ।" ପକ୍ଷୀରାଣୀ ପର୍ବତକୁମାରକୁ ଚାହିଁ କହିଲା, "ପୁଅ, ତୁମ ଘର କେଉଁଠି ? ତୁମେ କେଉଁଆଡ଼େ ଯାଉଛ ? ମୁଁ ତୁମ ପାଖରେ କୃତଜ୍ଞ । ଯଦି ତୁମେ କେବେ କୌଣସି ଅସୁବିଧାରେ ପଡ଼ ମୁଁ ନିଶ୍ଚୟ ସାହାଯ୍ୟ କରିବି । ତୁମେ ମୋର ତିନିଝିଅଙ୍କ ଜୀବନ ରକ୍ଷା କରିଛ । ମୁଁ ଜନ୍ମଥର ତୁମକୁ ସାହାଯ୍ୟ କରି ତୁମର ଋଣ ଶୁଝିବି ।'' ରାକ୍ଷସ ଠାରୁ ତା'ର କୁହୁକ-ଟୋପି ଆଣିବାକୁ ତାକୁ ରାଜା ପଠାଇଛନ୍ତି ଏବଂ ସେ ଯଦି ଏ କାମ କରି ନ ପାରେ ତେବେ ତା'ର ମୁଣ୍ଡକାଟ ହେବ ବୋଲି ପର୍ବତକୁମାର କହିଲା । ପକ୍ଷୀରାଣୀ କହିଲା, ''ବ୍ୟସ୍ତ ହୁଅ ନ । ମୁଁ ତୁମକୁ ନିଶ୍ଚୟ ସାହାଯ୍ୟ କରିବି । ମୋ ପିଠିରେ ବସ ।''

ପର୍ବତକୁମାର ପକ୍ଷୀରାଣୀ ପିଠିରେ ବସିଲା । ସେ ତା'ର ଡେଣା ମେଲାଇ ଉଚ୍ଚ ଆକାଶରେ ରାକ୍ଷସ ଉଆସ ଆଡ଼କୁ ଉଡ଼ିଗଲା । ସେ ପର୍ବତକୁମାରକୁ କହିଲା, ''ଯେତେବେଳେ ଆମେ ରାକ୍ଷସ ଘରପାଖରେ ପହଞ୍ଚିବା ତୁମେ ମୋର ଡେଣାକୁ ଜାବୁଡ଼ି ଧରିଥିବ ଓ ପାଟିକରି କହିବ ଅସୁର, ଅସୁର ଚଞ୍ଚଳ ବାହାରିଆ । ସୂର୍ଯ୍ୟ ପଶ୍ଚିମ ଦିଗରୁ ଉଇଁ ଆସୁଛନ୍ତି । ତାହା ଶୁଣି ଅସୁର ଯିମିତି ବାହାରି ଆସିବ ମୁଁ ତା' ମୁଣ୍ଡରୁ ଟୋପି ଝିଙ୍କି ଆଣିବି ଏବଂ ଉଡ଼ି ଆସିବି । ଏହି କାମ କଲାବେଳେ ତୁମେ ସତର୍କ

Digitized by srujanika@gmail.com

ରହିବ ଜୋରରେ ମୋ ଡେଣା ଭିଡ଼ି ଧରିଥିବ । ନୋହିଲେ ତଳେ ପଡ଼ିଯାଇପାର ।"

ପକ୍ଷୀରାଣୀ ଉଡ଼ି ଉଡ଼ି ଅସୁର ଉଆସ ପାଖରେ ପହଞ୍ଚିଲା । ସେ ତଳକୁ ଖସିଲା । ତତ୍‌କ୍ଷଣାତ୍ ପଞ୍ଚକୁମାର ପାଟିକଲା, "ଅସୁର, ଅସୁର ଶୀଘ୍ର ବାହାରିଆ । ପଶ୍ଚିମରେ ସୂର୍ଯ୍ୟ ଉଇଁ ଆସୁଛନ୍ତି ।" ଅସୁର ତା' ଘରେ ଗୁଁ' ପିଉଥିଲା । ସେ ଏପରି ପାଟି ଶୁଣିବାରୁ ଖୁବ୍ ଆନନ୍ଦିତ ହେଲା । ସେ ଭାବିଲା ଆରେ ମଣିଷ ପାଟି ଶୁଭୁଛି । ଭଲ ହେଲା । ମୋର ଖାଦ୍ୟ ମୋ ପାଖକୁ ଆସିଛି । ସେ ସଙ୍ଗେ ସଙ୍ଗେ ତା' ଉଆସରୁ ବାହାରକୁ ଦୌଡ଼ି ଆସିଲା ।

ଅସୁର ବାହାରକୁ ବାହାରି ଆସିବାକ୍ଷଣି ପକ୍ଷୀରାଣୀ ଶୀଘ୍ର ଉଡ଼ିଯାଇ ତା' ମୁଣ୍ଡରୁ ଟୋପିଟି ଝାମ୍ପିଆଣି ଉଡ଼ିଗଲା । କିନ୍ତୁ ଟୋପିର ଫିତା ରାକ୍ଷସ ମୁଣ୍ଡରେ ବନ୍ଧା ହୋଇଥିବାରୁ ଟୋପି ରାକ୍ଷସ ମୁଣ୍ଡରୁ ବାହାରି ନ ଥିଲା । ପକ୍ଷୀରାଣୀ ଅସୁର ସହ ଟୋପିକୁ ଧରି ଆକାଶକୁ ଉଡ଼ିଗଲା । ଆହୁରି ଆହୁରି ଉଚ୍ଚ ଆକାଶକୁ ଉଠିଲାରୁ ନିଃଶ୍ୱାସ ନେବାକୁ ଅସୁରକୁ କଷ୍ଟ ହେଲା । ପଞ୍ଚକୁମାର ତା' ମୁଣ୍ଡକୁ ଲକ୍ଷ୍ୟ କରି ଶର ଛାଡ଼ିଲା । ଶର ତା' ମୁଣ୍ଡରୁ କୁହୁକ-ଟୋପି ଫିତାକୁ ଛିଡ଼ାଇଦେଲା । ଫିତା ଛିଡ଼ିଗଲା; କିନ୍ତୁ କୁହୁକ-ଟୋପି ପକ୍ଷୀରାଣୀ ତା' ଗୋଡ଼ର ବଡ଼ ବଡ଼ ମୁନିଆ ନଖରେ ଭିଡ଼ି ଧରିଥାଏ । ଅସୁର ତଳେ କଚ୍ଛଡ଼ ହୋଇ ପଡ଼ିଗଲା । ତା'ର ମୁଣ୍ଡ ଘୂରେଇଗଲା । ଆଖିରୁ ଜୁଳୁଜୁଳିଆ ପୋକ ବାହାରିଲା ପରି ଲାଗିଲା । ସେ ଜାଣିପାରିଲା ନି ହଠାତ୍ ଏପରି କିଏ ତା'ର କୁହୁକ-ଟୋପି ନେଇଗଲା ? ସେ ଉଚ୍ଚ ଆକାଶରୁ ଭୂଇଁ ଉପରେ ପଡ଼ି ଖଣ୍ଡିଆଖାବରା ହୋଇ ନିଜ ଉଆସକୁ ଫେରିଲା ।

ପଞ୍ଚକୁମାର ଅସୁରର କୁହୁକ-ଟୋପି ପାଇ ଖୁସି ହେଲା । ସେ ପକ୍ଷୀରାଣୀକୁ ଧନ୍ୟବାଦ ଜଣେଇ ନିଜ ରାଜ୍ୟ ରାଜାଙ୍କ ପାଖକୁ ଗଲା । ରାଜାଙ୍କୁ କୁହୁକ-ଟୋପି ଦେଲା । ରାଜା ମୁଣ୍ଡରେ ଟୋପି ପିନ୍ଧି ସଙ୍ଗେ ସଙ୍ଗେ ରାଣୀଙ୍କୁ ଦେଖାଇଲେ । ପଞ୍ଚକୁମାର ଏପରି ଦୁଃସାହସିକ କାମ କରିପାରିବ ବୋଲି ରାଣୀଙ୍କ ପରତେ ନ ଥିଲା । ସେ ଯେତେବେଳେ

Digitized by srujanika@gmail.com

ଦେଖିଲେ ସତକୁସତ ସେ ଏ କାମ କରିପାରିବ, ତାଙ୍କ ମନରେ ଆଉ ଏକ ଖଳ ଉପାୟ ଦେଖାଗଲା । ରାଣୀ ରାଜାଙ୍କୁ କହିଲେ, "ତମର ତ କୁହୁକ-ପୋଷାକ ଓ କୁହୁକ-ଟୋପି ହେଲାଣି । ବର୍ତ୍ତମାନ କୋଣସି ଲୋକ ତମର ସମକକ୍ଷ ନୁହେଁ । କିନ୍ତୁ ଦୁଃଖର କଥା ସ୍ୱର୍ଗପୁରୀର କୌଣସି ଦେବକନ୍ୟା କିମ୍ବା ଗନ୍ଧର୍ବକୁମାରୀ ତମ ଦରବାରରେ ନାହାନ୍ତି ।" ରଜା ତ ସର୍ବଦା ଦୁଷ୍ଟା କୁଟିଳା ରାଣୀ କଥାରେ ଚାଲନ୍ତି । ସେ କହିଲେ, "କିନ୍ତୁ ମୁଁ କିପରି ସ୍ୱର୍ଗରୁ ଦେବକନ୍ୟା ଆଣିପାରିବି ?" "ପର୍ବତକୁମାର ବ୍ୟତୀତ ଆଉ କିଏ ଏ କାମ କରିପାରିବ ?" ରାଣୀ ଉତ୍ତର ଦେଲେ ।

ତହୁଁ ରାଜା ପର୍ବତକୁମାରକୁ ଡକାଇଲେ । ସେ କହିଲେ, "ପର୍ବତକୁମାର, ତୁମେ ଯାଅ ମୋ ପାଇଁ ସ୍ୱର୍ଗପୁରୀରୁ ଏକ ଦେବକନ୍ୟା ଧରିଆଣ । ଯଦି ଏ କାମ ତୁମେ କରି ନ ପାର ତୁମର ମୁଣ୍ଡକାଟ ହେବ ।" ପର୍ବତକୁମାର ଜାଣିଥିଲା ଏ କାମ କରିବା ସମ୍ଭବ ନୁହେଁ । ତେଣୁ ସେ କହିଲା, "ମହାରାଜ, ଆଉ କୌଣସି ଅନ୍ୟ କାମ କରିବାକୁ ଆଦେଶ କରନ୍ତୁ । ଧରାର ମଣିଷ ସ୍ୱର୍ଗରୁ ଦେବକନ୍ୟା ଧରିଆଣିବା ପରି ନିହାତି ଅସମ୍ଭବ କାମ କରିବା ପାଇଁ ଆଦେଶ କରନ୍ତୁନି । ଏ କାର୍ଯ୍ୟ କୌଣସି ମଣିଷଶକ୍ତିର ବାହାରେ ।" ରାଜା ଅତି ରାଗରେ ଗର୍ଜିଉଠି କହିଲେ, "ମୋର କଥା ଆଇନ । ତୁମେ କିପରି ମୋର ଆଦେଶ ତଥା ଆଇନ ଅମାନ୍ୟ କରିବାର ଦୁଃସାହସ କରୁଛ ? ରାଜ ଦରବାରର ଜଗୁଆଳମାନେ ପର୍ବତକୁମାରକୁ ଧକ୍କା ଦେଇ ବାହାର କରିଦେଲେ । ସେମାନେ କହିଲେ, "ରାଜାଙ୍କ ଆଜ୍ଞା ପାଳନ କରି ଫେରିବୁ; ନଚେତ୍ ତୋର ମୁଣ୍ଡକାଟ ହେବ ।" ସେ ଦୁଃଖରେ ରାଜବାଟୀ ପରିତ୍ୟାଗ କଲା ।

ପର୍ବତକୁମାର ଅନ୍ୟ ଉପାୟ ନ ଦେଖି ପକ୍ଷୀରାଣୀ ପାଖକୁ ଗଲା । ପକ୍ଷୀରାଣୀ ସବୁକଥା ଶୁଣି ତାକୁ କହିଲା, "ପୁଅ, ବ୍ୟସ୍ତ ହୁଅ ନାହିଁ । ମୁଁ ସବୁ ବ୍ୟବସ୍ଥା କରିଦେବି । ସେ ନିଜ ପିଠି ଉପରେ ପର୍ବତକୁମାରକୁ ବସାଇ ଉଚ୍ଚ ଆକାଶକୁ ଉଡ଼ିଗଲା । ଆହୁରି ଉଚ୍ଚକୁ ଉଚ୍ଚକୁ ଉଠିବାକୁ ଲାଗିଲା । ବହୁତ ଉଚ୍ଚକୁ ଉଡ଼ି ସେମାନେ ଗୋଟିଏ ଘର ଦେଖିଲେ । ଏଇ ଘରେ ବୁଢ଼ାବୁଢ଼ୀ ଦୁଇଜଣ ଓ ସେ ଦୁହିଁଙ୍କ ସୁନ୍ଦରୀ ଝିଅଟିଏ ରହୁଥିଲେ ।

Digitized by srujanika@gmail.com

ପଞ୍ଚକୁମାର ବୁଢ଼ାବୁଢ଼ୀଙ୍କୁ ନମସ୍କାର କଲା । ସେମାନେ ତାକୁ ବସିବାକୁ ଆସନ ଦେଲେ । ବୁଢ଼ୀ କହିଲା—"ଯୁବକ, ତୁମେ କୁଆଡ଼େ ଯାଉଛ ?"

"—ମୁଁ ସ୍ୱର୍ଗପୁରୀକୁ ଯାଉଛି ଏକ ଦେବକନ୍ୟା ଆଣିବାକୁ । ପଞ୍ଚକୁମାର ଉତ୍ତର ଦେଲା ।"

ବୁଢ଼ାବୁଢ଼ୀ ଦୁହେଁ ପଞ୍ଚକୁମାରକୁ ଦେଖି ଖୁବ୍ ଖୁସି ହୋଇଗଲେ । ସେ ଦୁହେଁ ଏକ ସଙ୍ଗରେ କହିଲେ, "ପୁଅ, ସ୍ୱର୍ଗରୁ ଫେରିଲାବେଳେ ଆମ ଘରକୁ ନିଶ୍ଚୟ ଆସିବ ।" ପଞ୍ଚକୁମାର ରାଜିହେଲା । ସେମାନେ ତାକୁ ଖାଇବାକୁ ଦେଲେ । ତା'ପରେ ପକ୍ଷୀରାଣୀ ପିଠିରେ ବସି ସେ ସ୍ୱର୍ଗଯାତ୍ରା ପଥରେ ଆଗେଇଲା । ପକ୍ଷୀରାଣୀ ପିଠି ଉପରେ ପଞ୍ଚକୁମାର ଆରାମରେ ବସିଥାଏ ଠିକ୍ ଯିମିତି ପୁଷ୍ପକବିମାନରେ କିମ୍ବା ଉଡ଼ାଜାହାଜରେ ଉଡ଼ିଗଲା ଭଳି । ଅମରାବତୀରେ ପହଞ୍ଚିଲା ପୂର୍ବରୁ ବାଟରେ ଆଉ ଦୁଇଟି ଘର ପଡ଼ିଲା । ପ୍ରତ୍ୟେକ ଘରେ ଦୁଇଟି ବୁଢ଼ାବୁଢ଼ୀ ଓ ଜଣେ ଲେଖାଏଁ ସୁନ୍ଦରୀ ଝିଅ ଥିଲେ । ସେ ଦୁଇ ଘରର ବୁଢ଼ାବୁଢ଼ୀ ମଧ୍ୟ ପଞ୍ଚକୁମାରର କୁଶଳ କାମନା କଲେ ଏବଂ ଫେରିଲାବେଳେ ସେମାନଙ୍କ ଘରକୁ ଆସିବାକୁ ନିମନ୍ତ୍ରଣ କଲେ ।

ପକ୍ଷୀରାଣୀ ପିଠିରେ ବସି ପଞ୍ଚକୁମାର ସ୍ୱର୍ଗ ଗମନ କଲା । ବହୁତ ଉଡ଼ ଉଡ଼ ଗଲା ପରେ ସ୍ୱର୍ଗଦ୍ୱାର ପଡ଼ିଲା । ପକ୍ଷୀରାଣୀ କହିଲା, "ଏଇଠି ମତେ ଏକ ଗଛରେ ବାନ୍ଧିଦିଅ । ମୁଁ ଏଠାରେ ତୁମକୁ ଅପେକ୍ଷା କରି ରହିଲି । ତୁମେ ସ୍ୱର୍ଗପୁରୀକୁ ଯାଅ । ସେଠାରେ ଏକ ଦେବୀଙ୍କୁ ଦେଖିବ । ସେ ତୁମକୁ ତିନି କପ୍ ଚା' ଦେବ । ତୁମେ ପ୍ରଥମ କପ୍ ଚା' ପିଇବ । ଦ୍ୱିତୀୟ କପ ଚା' ଆଦୌ ପିଇବ ନାହିଁ । କିନ୍ତୁ ତୃତୀୟ କପ୍ ଚା' ଅଧେ ପିଇବ । ସାବଧାନ, ତୃତୀୟ କପ୍ ଚା' ସମୁଦାୟ ପିଇବ ନାହିଁ । ମୁଁ ଯେମିତି କହିଲି ସେପରି କଲେ, ମୁଁ ନିଶ୍ଚିତ ଯେ ତୁମେ ଜଣେ ଦେବକନ୍ୟା ପାଇବ ।"

ତା'ପରେ ପଞ୍ଚକୁମାର ସ୍ୱର୍ଗପୁରୀ ମଧ୍ୟକୁ ଗଲା । ସେ ଜଣେ ଦେବୀଙ୍କୁ ଦେଖିଲା । ତାଙ୍କୁ ପ୍ରଣାମ କରି ତାଙ୍କର ବନ୍ଦନା ଗାନକଲା । ଦେବୀ ସନ୍ତୁଷ୍ଟ ହୋଇ ଏକ ପରେ ଅନ୍ୟ ଏକ, ଏପରି ତିନି କପ୍ ଚା' ତାକୁ ପିଇବାକୁ ଦେଲେ । ସେ ପକ୍ଷୀରାଣୀ କଥା ମୁତାବକ କାମ କଲା

Digitized by srujanika@gmail.com

ତା'ପରେ ସେ ନିଜର ଇଚ୍ଛା ପ୍ରକାଶ କଲା । ସଙ୍ଗେ ସଙ୍ଗେ ଦେବୀ ନିଜର ଝିଅ ଏକ ସୁନ୍ଦରୀ ଦେବକନ୍ୟାକୁ ପର୍ବତକୁମାରକୁ ଦେଲେ । ସେ ଦେବକନ୍ୟାକୁ ସଙ୍ଗରେ ନେଇ ସ୍ୱର୍ଗଦ୍ୱାରକୁ ଗଲା । ପକ୍ଷୀରାଣୀକୁ ଗଛରୁ ଖୋଲି ତା' ପିଠିରେ ଦୁହେଁ ବସିଲେ । ତା'ପରେ ପକ୍ଷୀରାଣୀ ସେ ଦୁହିଁଙ୍କୁ ନିଜ ପକ୍ଷରେ ଧରି ପୃଥିବୀ ଅଭିମୁଖେ ଉଡ଼ିଲା । ଫେରିଲା ବାଟରେ ଉପରୋକ୍ତ ତିନୋଟି ଘର ପାଖରେ ଅଟକି ଅଟକି ଆସିଲେ । ପ୍ରଥମ ଘରେ ଥିବା ବୁଢ଼ାବୁଢ଼ୀ ପର୍ବତକୁମାରକୁ ତାଙ୍କର ଝିଅକୁ ବାହାଦେଲେ ଏବଂ ଏକ ରୁପା କୁଞ୍ଚି ଉପହାର ଦେଲେ । ଦ୍ୱିତୀୟ ଘରରବୁଢ଼ାବୁଢ଼ୀ ପର୍ବତକୁମାରକୁ ନିଜ ଝିଅ ବାହାଦେଲେ ଏବଂ ଖଣ୍ଡେ ହଳଦିଆ ସୁନ୍ଦର କନା ଉପହାର ଦେଲେ । ତୃତୀୟ ଘରର ବୁଢ଼ାବୁଢ଼ୀ ନିଜ ଝିଅକୁ ପର୍ବତକୁମାରକୁ ବାହାଦେଲେ ଏବଂ ଏକ ଶ୍ରେଷ୍ଠ ଦର୍ପଣ ଉପହାର ଦେଲେ ।

ପର୍ବତକୁମାର, ଦେବକନ୍ୟା ଓ ତିନୋଟି ଝିଅ ସମସ୍ତେ ପକ୍ଷୀରାଣୀ ପିଠିରେ ବସି ପୃଥିବୀ ଅଭିମୁଖେ ଉଡ଼ି ଚାଲିଲେ । କେତେଦିନ ଉଡ଼ି ଉଡ଼ି ପର୍ବତକୁମାର ନିଜ ରାଜ୍ୟର ରାଜପ୍ରାସାଦର ପଶ୍ଚିମରେ ଥିବା ନଦୀ କୂଳରେ ପହଞ୍ଚିଲା । ଦେବକନ୍ୟା ନିଜ ମୁଣ୍ଡରୁ ରୁପାକଣ୍ଟାଟିଏ କାଢ଼ି ସେଥିରେ ଭୂମି ଉପରେ ଏକ ଚିହ୍ନ କରିଦେଲା । ସଙ୍ଗେ ସଙ୍ଗେ ସେଠାରେ ଏକ ନୂଆ ସୁନ୍ଦର ତମ୍ବୁ ପଡ଼ିଗଲା । ଟେବୁଲ ଉପରେ ଖାଦ୍ୟପଦାର୍ଥ ଥୁଆ ହୋଇଗଲା । ସେମାନେ ସମସ୍ତେ ଖାଇଲେ । ତା'ପରେ ପର୍ବତକୁମାର ରାଜପ୍ରାସାଦକୁ ଯାଇ ରାଜାଙ୍କୁ ଜଣାଇଲା ସେ ଏକ ଦେବକନ୍ୟା ସ୍ୱର୍ଗରୁ ଆଣିଛି । ଦୁଷ୍ଟାରାଣୀ ଏ କଥା ଶୁଣି ଅବାକ୍ ହୋଇଗଲା । ଭୟରେ ଥରିବାକୁ ଲାଗିଲା । ତା'ର ବିସ୍ମୟର ସୀମା ରହିଲା ନି । ସେ ମନେମନେ ଭାବିଲା, ପର୍ବତକୁମାର ଜଣେ ମହାନ୍ ଯୁବକ । ତାକୁ ବୁଦ୍ଧି ବଳରେ କେହି ପାରିବେ ନାହିଁ । ପର୍ବତକୁମାରକୁ କିପରି ଜୀବନରେ ମାରିଯିବ ? ରାଣୀ ରଜାଙ୍କ କାନରେ କ'ଣ ଫୁସ୍‌ଫୁସ୍ କରି କହିଲା । ତା'ପରେ ରାଜା କହିଲେ—"ଭଲ କଥା, ମୁଁ ଆସନ୍ତା କାଲି ଦେବକନ୍ୟାକୁ ଦେଖିବାକୁ ଯିବି । ନଈର ଉତ୍ତର ଦିଗରେ ଆସନ୍ତା କାଲି ସକାଳୁ ଯେପରି ଏକ ସୁନ୍ଦର ସୁନେଲି ରୁପାଖମ୍ବଖଚିତ କାଚର ପ୍ରକାଣ୍ଡ ପ୍ରାସାଦ ନିର୍ମିତ ହୋଇଥିବ । ଯଦି ଏ କାମ କାଲି

Digitized by srujanika@gmail.com

ସକାଳସୁଦ୍ଧା କରି ନ ପାରି ତୁମର ମୁଣ୍ଡକାଟ ହେବ ।” ପର୍ବତକୁମାର ମନଦୁଃଖରେ ତମ୍ବୁକୁ ଫେରିଲା । ଦେବକନ୍ୟାକୁ ଏ କଥା କହିଲା । ଦେବକନ୍ୟା କହିଲା—“ଆଦୌ ବିଚଳିତ ହୁଅ ନାହିଁ । ମୁଁ ସବୁକାମ କରିଦେବି । ତମେ ଆଜି ରାତିରେ ଆରାମରେ ଶୋଇପଡ଼ । ସକାଳୁ ଦେଖିବ ସବୁ ଠିକ୍ ହୋଇଯାଇଥିବ ।”

ରାତିରେ ସମସ୍ତେ ଶୋଇପଡ଼ିବାରୁ ଅଧ ରାତିରେ ଦେବକନ୍ୟା ତିନି ଗନ୍ଧର୍ବ କନ୍ୟାଙ୍କ ସହିତ ରୂପା ଛୁଞ୍ଚି, ହଳଦିଆ କନା ଓ ଟିକି ଦର୍ପଣ ନେଇ ଉତ୍ତର ଦିଗରେ ଥିବା ପାହାଡ଼ ଉପରେ ଚଢ଼ିଲେ । ସେମାନେ କେତେଗୁଡ଼ିଏ ପଥରଖଣ୍ଡ ଗୋଟେଇଲେ । ଦେବକନ୍ୟା ସେହି ପଥରଖଣ୍ଡଗୁଡ଼ିକ ଏକ ବୃତ୍ତାକାର ଗୋଳେଇ କଲା । ରୂପା ଛୁଞ୍ଚି ମଝିରେ ରଖିଲା । ଛୁଞ୍ଚି ଉପରେ ହଳଦିଆ କନା ପକାଇଲା । ସାତ ପାହୁଣ୍ଡ ଦକ୍ଷିଣକୁ ସେମାନେ ଗୋଟିଏ ଗ୍ଲୋଟ ଗାତ ଖୋଳିଲେ । ସେହି ଗାତରେ ଟିକି ଦର୍ପଣଟି ପୋତିଲେ । ତା’ପରେ ସେମାନେ ନିଜ ତମ୍ବୁକୁ ଫେରିଗଲେ ।

ତା’ ପରଦିନ ସକାଳୁ ସମସ୍ତେ ଦେଖିଲେ ଏକ ସୁନେଲି ସୁନ୍ଦର ଉଜ୍ଜ୍ୱଳ ବିରାଟ କାଚଉଆସ ନିର୍ମିତ ହୋଇଛି । ରଜା ଓ ରାଣୀ ଏହା ଦେଖି ଜାଣିପାରିଲେ ସେ ଦୁହିଁଙ୍କ ଖଳଯୋଜନା ସବୁ ପଣ୍ଡ ହେଲା । ଆଉ କୌଣସି ଉପାୟରେ ପର୍ବତକୁମାରର ମୃତ୍ୟୁଦଣ୍ଡ ଆଦେଶ ରଜା ଦେଇ ପାରିଲେନି । ଶେଷରେ ରଜା ନିଜର ସୈନବାହିନୀକୁ ଆଦେଶ ଦେଲେ ଉତ୍ତର ପାହାଡ଼ ଉପରେ ଅବସ୍ଥିତ ସୁନ୍ଦର କାଚ ପ୍ରାସାଦ ଆକ୍ରମଣ କରି ପର୍ବତକୁମାରକୁ ମାରିଦିଅ ।

ସେତେବେଳକୁ ପର୍ବତକୁମାର, ଦେବକନ୍ୟା ଓ ତିନିଜଣ ଗନ୍ଧର୍ବକନ୍ୟାଙ୍କ ସଙ୍ଗରେ ଉତ୍ତର ପାହାଡ଼ର ସୁନ୍ଦର କାଚପ୍ରାସାଦରେ ଥାଏ । ଯେତେବେଳେ ଦେବକନ୍ୟା ଦେଖିଲା ସୈନ୍ୟଗଣ ଧାଇଁ ଆସୁଛନ୍ତି, ସେ ପର୍ବତକୁମାରକୁ କହିଲା—ତମେ ଧନୁରୁ ତୀର ଛାଡ଼ ସୈନ୍ୟମାନଙ୍କ ଉପରକୁ । ପର୍ବତକୁମାର ଏକ ତୀକ୍ଷ୍ଣ ଶର ଛାଡ଼ିଲା । ଦେବକନ୍ୟାର ମନ୍ତ୍ରବଳରେ ସେହି ଶରଟି ଲକ୍ଷ ଲକ୍ଷ ଶରରେ ପରିଣତ ହୋଇ

Digitized by srujanika@gmail.com

ସୈନ୍ୟମାନଙ୍କୁ ବିନାଶ କଲା । ତା’ପରେ ଘୋର ଯୁଦ୍ଧରେ କାଚପ୍ରାସାଦ ଭାଙ୍ଗିଗଲା ଏବଂ ସେଥିରୁ ଖାଲି ପାଣିର ସୁଅ ଛୁଟିଲା । ସେହି ପାଣିସୁଅ ଚାଲିକୁ ଗଡ଼ ରାଜାରାଣୀ, ସୈନ୍ୟସାମନ୍ତ ସମସ୍ତଙ୍କୁ ଭସାଇ, ବୁଡ଼ାଇ ମାରି ପକାଇଲା । ଉତ୍ତର ପାହାଡ଼ ପାଦଦେଶରେ ଏହି ଜଳଧାରା ଏକ ହ୍ରଦର ସୃଷ୍ଟି ହେଲା । କିନ୍ତୁ ଦେବକନ୍ୟା, ତିନିଜଣ ଗନ୍ଧର୍ବକନ୍ୟା ଓ ପର୍ବତକୁମାର ତା’ ପୂର୍ବରୁ କାଚପ୍ରାସାଦ ଛାଡ଼ି ଉତ୍ତର ପାହାଡ଼ର ଅନ୍ୟ ପଟରେ ଠିଆହୋଇ ଚାଲେ ଦୁଷ୍ଟ ରାଜା, ଦୁଷ୍ଟା ରାଣୀ ଓ ସେମାନଙ୍କର ସୈନ୍ୟସାମନ୍ତଙ୍କ ଶୋଚନୀୟ ଶେଷ ଅବସ୍ଥା ଦେଖୁଥିଲେ ।

ଦୁଷ୍ଟା ରାଣୀ ଓ ଲୋଭୀ ରାଜା ମରିବାରୁ ପ୍ରଜାମାନେ ଅତି ଆନନ୍ଦିତ ହେଲେ । ସେମାନେ ପର୍ବତକୁମାରଙ୍କୁ ନିଜ ରାଜ୍ୟର ନୂଆ ରାଜା କଲେ । ଦେବକନ୍ୟା ପାଟରାଣୀ ହେଲେ । ତିନିଜଣ ଗନ୍ଧର୍ବକନ୍ୟା ରାଣୀ ହେଲେ । ପକ୍ଷୀରାଣୀର ତିନି ଝିଅଙ୍କୁ ମଧ୍ୟ ରାଜା ପର୍ବତକୁମାର ବାହା ହେଲେ । ମୋଟରେ ନୂଆ ରାଜା ପର୍ବତକୁମାରଙ୍କର ସାତରାଣୀ । ଛଅ ରାଣୀ ଓ ଦେବକନ୍ୟା ପାଟରାଣୀ । ସେ ନିଜର ବୁଢ଼ା ବାପମା’ଙ୍କୁ ଆଣି ରାଜପ୍ରାସାଦରେ ରଖିଲେ । ପକ୍ଷୀରାଣୀ ମଧ୍ୟ ରାଜଉଦ୍ୟାନରେ ରହିଲେ । ପର୍ବତକୁମାର ସମସ୍ତଙ୍କୁ ସଙ୍ଗରେ ନେଇ ସୁଖରେ ରହିଲେ । ନ୍ୟାୟଶାସନରେ ପ୍ରଜାମାନଙ୍କୁ ପୁଅ ପରି ପାଳିଲେ । ରାଜ୍ୟସାରା ଚାରିଆଡ଼େ ଲୋକମାନେ ନୂଆରାଜା ପର୍ବତକୁମାରଙ୍କର ଯଶଗାନ ଓ ଜୟଗାନ କଲେ ।

Digitized by srujanika@gmail.com

# ବୁଦ୍ଧିର କରାମତି

ଏକଦା ଚୀନ୍ ଦେଶରେ ମା-ସାଇ ନାମରେ ଜଣେ ଚତୁର ଓ ବୁଦ୍ଧିମାନ୍ ଲୋକ ଥିଲା । ତା'ର ଉପସ୍ଥିତ ବୁଦ୍ଧି ଅତି ପ୍ରଖର । ତାକୁ ଧନୀଲୋକମାନେ ଡରୁଥିଲେ; କିନ୍ତୁ ଗରିବ ଲୋକମାନେ ଖୁବ୍ ଭଲ ପାଉଥିଲେ ।

ଫସଲ ଅମଳ ବେଳ । ମା-ସାଇ ଯେତେ ଶସ୍ୟ ଅମଳ କଲା ତାକୁ ଦୁଇଭାଗ କଲା । ଏକ ଭାଗ ଶସ୍ୟ ଦେଇ ସେ ଜଣେ ଶିକାରୀ ଠାରୁ ଦୁଇଟି କୋକଶିଆଳି କିଣିଲା । ଅନ୍ୟ ଭାଗ ଶସ୍ୟ ବଦଳରେ ସେ କେତେଗୁଡ଼ିଏ କୁକୁଡ଼ା କିଣିଲା । ସେ ଘରେ ଗୋଟିଏ କୋକ ରଖିଲା ଓ ଅନ୍ୟ କୋକକୁ ଲମ୍ବା ଦଉଡ଼ିରେ ବାନ୍ଧି ବାହାରେ ବୁଲାଇ ନାନାପ୍ରକାର କୌଶଳ ଶିଖାଇଲା ।

ଦିନେ ଜମିଦାର ଖଜଣା ଆଦାୟ କରିବାକୁ ମା-ସାଇ ଘରେ ପହଞ୍ଚିଲେ । ଚଳିତବର୍ଷ ଭଲ ଫସଲ ହୋଇଛି ବୋଲି ମା-ସାଇ କହିଲା । ଯେ କୌଣସି ଦିନ, ଆସନ୍ତା କାଲି କିମ୍ବା ପହରଦିନ ଆସି ଖଜଣା ଅସୁଲ ନେଇଯାଇ ପାରନ୍ତି ବୋଲି ମଧ୍ୟ ସେ ତାଙ୍କୁ ଜଣାଇଦେଲା । ଜମିଦାର ଦେଖିଲେ ଗୋଟିଏ କୋକକୁ ଦଉଡ଼ିରେ ବାନ୍ଧି ସେ ବୁଲାଉଛି । ତହୁଁ ସେ କହିଲେ, "କି ଅଜବ କାମ କରୁଛୁ ରେ ? କୋକକୁ ଏପରି ଦଉଡ଼ିରେ ବାନ୍ଧି ଦୌଡ଼ାଉଛୁ, ସେ ପଳେଇଯିବ ?" ମା-ସାଇ ହସି ଉତ୍ତର ଦେଲା, "ପଳେଇଯିବ ? ସେ ମୋର ପୋଷାକୋକ । କୁଆଡ଼େ ପଳେଇଯିବ ? ଦୌଡ଼ିବାରେ ସେ ଖୁବ୍ ଧୁରନ୍ଧର । ଶିକାର କରିବାରେ ଆହୁରି ପାରଙ୍ଗମ ।" ତା'ପରେ ସେ ଗୀତ ଛନ୍ଦରେ କୋକକୁ ଆଦେଶ ଦେଲା—

ଯା' ମୋ କୋକ, ମୋ ସୁନା କୋକ,
ଆଣିବୁ ଧରି କୁକୁଡ଼ା ଦେଖି ।
ବଡ଼ ବଡ଼ ମୋଟା ମୋଟା,
ନୋହିଲେ ଆଜି ଗୋଡ଼କୁ ତୋର କରିବ ଘ୍ରୋଟା ।

Digitized by srujanika@gmail.com

ଏହି ଗୀତ ବୋଲି ସେ କୋକକୁ ଗୁଚ୍ଛରେ ଦୁଇ ଚୁଣ ପାହାର ପିଟି ତା' ବେକରୁ ଦଉଡ଼ି ଫିଟାଇଦେଲା । କୋକ ଖୁବ୍ ଜୋର୍‌ରେ ଦୌଡ଼ି ପଳାଇଲା । ଆଖି ପିଛୁଳାକେ ସେ ଅଦୃଶ୍ୟ ହୋଇଗଲା । ଜମିଦାର ଏହା ଦେଖି ତାଜୁବ୍ ହୋଇଗଲେ । ଅବାକ୍ ହୋଇ ସେ ଚୁହିଁ ରହିଲେ ।

ମା-ସାଇ କହିଲା, "ଆପଣଙ୍କୁ ଆସନ୍ତାକାଲି ମୋ ଘରେ ଭୋଜନରେ ଯୋଗଦେବାକୁ ନିମନ୍ତ୍ରଣ ରହିଲା । ମୋ କୋକ କେତେଗୁଡ଼ିଏ କୁକୁଡ଼ା ଶିକାର କରି ଆଣିବ । ସେଥିଲାଗି ମୁଁ ତାକୁ ପଠାଇଲି । ସେହି କୁକୁଡ଼ା ମାଉଁସରେ ଆମର ଖୁବ୍ ଭଲ ଭୋଜି ହେବ । ଦୟାକରି ଆପଣ ନିଶ୍ଚୟ ଆସନ୍ତା କାଲି ମଧ୍ୟାହ୍ନରେ ମୋ ଘରକୁ ଆସିବେ । ଆଜ୍ଞା, ଭୁଲିଯିବେନି ।" ଜମିଦାର ହଁ ଭରି ନିଜ ଘରକୁ ଚାଲିଗଲେ ।

ପରଦିନ ମଧ୍ୟାହ୍ନବେଳକୁ ଭୋଜି ପ୍ରସ୍ତୁତ ହୋଇଗଲା । ଜମିଦାର ମା-ସାଇ ଘର ପାଖରେ ପହଞ୍ଚୁ ପହଞ୍ଚୁ ମାଂସଝୋଳ ଓ ନାନାପ୍ରକାର ସୁସ୍ୱାଦୁ ରନ୍ଧଣାର ବାସନା ହେଲା । ତାଙ୍କ ପାଟିରୁ ମାଂସ ତରକାରୀ ବାସନାରେ ଲାଳ ବୋହିପଡ଼ିଲା । ସେ ଶୀଘ୍ର ଶୀଘ୍ର ଚାଲି ମା-ସାଇ ଘରେ ପହଞ୍ଚିଗଲେ । ସେତେବେଳକୁ ଟେବୁଲ୍ ଉପରେ କୁକୁଡ଼ାମାଂସ ତିଆରି ନାନାପ୍ରକାର ରନ୍ଧଣା—କୁକୁଡ଼ାମାଂସ ଝୋଳ, କଟ୍‌ଲେଟ୍, ରୋଷ୍ଟ, ଫୋର୍ ଇତ୍ୟାଦି ଥୁଆ ହୋଇଥାଏ ।

"ତୁମର କୋକ କେଉଁଠି ଅଛି ?" କୌତୁହଳ ହୋଇ ଜମିଦାର କହିଲେ, "ତାକୁ ମଧ୍ୟ ଆଣ, ଆମ ପାଖରେ ବସି ଖାଇବ ।"

"ତା' ପାଇଁ ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି ? ଆମେ ଖାଇବା ଆସନ୍ତୁ ।" ମା-ସାଇ ଉତ୍ତର ଦେଲା ।

ସେ ଦୁହେଁ ଖାଇଲେ । କୁକୁଡ଼ା ମାଂସରେ ନାନାରକମ ସୁସ୍ୱାଦୁ ରନ୍ଧଣା ଖାଇ ଜମିଦାରଙ୍କ ଖୁସି କହିଲେ ନ ସରେ । ସେ ଭାବିଲେ, ମୋର ଏମିତି ଗୋଟିଏ କୋକ ଥାଆନ୍ତା କି, ମୁଁ ନିତି ମାଗଣାରେ କେତେ କୁକୁଡ଼ା ପାଆନ୍ତି । ଏମିତି ଆନନ୍ଦରେ ମାଉଁସ ଖାଆନ୍ତି । ଖାଇ ସାରିବା ପରେ ଜମିଦାର କହିଲେ, "ସାବାସ୍ ତୁମର କୋକ, ସାବାସ୍ !

Digitized by srujanika@gmail.com

ଆଚ୍ଛା ମା-ସାଇ, ତୁମ କୋକକୁ ଟିକିଏ ଏଠାକୁ ଆଣ, ମୁଁ ତାକୁ ଦେଖେ । ତାକୁ ମୋର ଧନ୍ୟବାଦ ଦିଏ ।"



ମା-ସାଇ ମନେ ମନେ ଖୁସିହୋଇ ଘରେ ଲୁଚାଇଥିବା ଅନ୍ୟ କୋକକୁ ଆଣି ଦେଖାଇଲେ । ଜମିଦାର ଖୁସିହୋଇ କହିଲେ, "ଖୁବ୍ ବଢ଼ିଆ, ଖୁବ୍ ଭଲ କୋକଟିଏ । ଆଚ୍ଛା ମା-ସାଇ, ଏକଶହ ସୁନାମୋହର ନେଇ ଏ କୋକଟି ମତେ ବିକିଦେବ କି ?"

"ନା ନା, ତା' କେମିତି ହେବ ? ମୋ ପାଖରେ ଏ କୋକ ଥିଲେ ମୋର କେବେ ଖାଇବାର ଅଭାବ ରହିବନି । ସେ ମୋର ପୋଷଣାହାରୀ ରୋଜଗାରିଆ ପୁଅ ପରି । ମୁଁ ବର୍ତ୍ତମାନ ଖଜଣାବାବଦ ମୋର ଦେୟ ଆପଣଙ୍କୁ ଦେଇ ଦେଉଛି । କିନ୍ତୁ ମୁଁ ମୋ ଆଦରର ଧନ କୋକକୁ ବିକି ପାରିବିନି ।"

"ମା-ସାଇ, ମୁଁ ତୁମଠାରୁ ଖଜଣା ନେବି ନାହିଁ । ତୁମର ଖଜଣା ଛାଡ଼ କରିଦେଲି । କିନ୍ତୁ ତୁମର କୋକଟି ମତେ ବିକିଦିଅ । ମୁଁ ତା'ର ମୂଲ୍ୟବାବଦ ତମକୁ ଦୁଇଶହ ସୁନାମୋହର ଦେବି ।"

Digitized by srujanika@gmail.com

ମା-ସାଇ ଦୀର୍ଘନିଶ୍ୱାସ ପକାଇଲା । ଦୁଃଖିତ ହେବାର ଛଳନା କଲା । ତା'ପରେ ସେ କହିଲା, "ମୋ କୋକଟି କିଣିନେବାକୁ ଆପଣଙ୍କର ଯେତେବେଳେ ଏତେ ଆଗ୍ରହ, ମୁଁ ଆଉ ନାହିଁ କରିପାରୁ ନାହିଁ । କିନ୍ତୁ ତିନିଶହ ସୁନାମୋହର ନ ଦେଲେ ମୁଁ କୋକଟି ଦେଇପାରିବି ନାହିଁ ।" ଜମିଦାର ମହା ଖୁସିରେ ତିନିଶହ ସୁନାମୋହର ମା-ସାଇକୁ ଦେଇ କୋକଣିଆଳଟି ନେଇ ନିଜ ଘରକୁ ଗୃଲିଗଲେ ।

ଜମିଦାର ଘରେ ପହଞ୍ଚି ତାଙ୍କ ସ୍ତ୍ରୀଙ୍କୁ ବାହାଦୁରି ଦେଖାଇ କହିଲେ, "ମୁଁ ଏକ ଅଦ୍ଭୁତ କୋକଣିଆଳ କିଣି ଆଣିଲି । ବଣବୁଦାରୁ ନିତି କେତେ କୁକୁଡ଼ା ସେ ଧରିଆଣି ଦେବ ।" ତାଙ୍କର ଏ କଥାରେ ଆଦୌ ବିଶ୍ୱାସ ହେଉନି ବୋଲି ତାଙ୍କ ସ୍ତ୍ରୀ ଉତ୍ତର ଦେଲେ । ଜମିଦାର କହିଲେ, "ନିଜ ଆଖିରେ ଦେଖ ମୋ କୋକର କରାମତି ।" ଏହା କହି ସେ କୋକକୁ ଥାପଡ଼େଇ ମା-ସାଇର ଅନୁକରଣରେ ପାଟିକରି ଗୀତ ଛଳରେ କହିଲେ—

'ଯାଆରେ ଯା' ମୋ ସୁନା କୋକ,
ଆଣିବୁ କେତେ କୁକୁଡ଼ା ଠେକ ?'

ଏମିତି ବାରମ୍ବାର ଗୀତ ବୋଲୁ ବୋଲୁ ସେ କୋକ ବେକରୁ ଦଉଡ଼ି ଫିଟାଇ ଦେଇ ତାକୁ ଛାଡ଼ିଦେଲେ । କୋକ ଦୌଡ଼ି ପଳାଇଲା ।

ଜମିଦାର କୋକର ଫେରିବା ବାଟକୁ ଗୃହିଁ ରହିଲେ । ସଞ୍ଜ ହେଲା । କୋକ ଫେରିଲାନି । ରାତି ହେଲା । ତଥାପି କୋକ ଫେରିଲାନି । ଏମିତି ଦିନ ପରେ ଦିନ ସାତଦିନ ଅତିବାହିତ ହେଲା । କିନ୍ତୁ କୋକର ଦେଖା ନାହିଁ । ତା'ପରେ ଜମିଦାର ବୁଝିଗଲେ ମା-ସାଇ ତାଙ୍କୁ ଠକିଛି । ସେ ରାଗରେ ହାତମୁଠା କରି ଦାନ୍ତ କଡ଼ମଡ଼ କଲେ । ତା'ପରେ କହିଲେ, "ନରାଧମ ! ସେ ମତେ ଠକିବାକୁ ସାହସ କଲା ! ହଉ, ତୋତେ ଦେଖି ନେଉଚି ।"

ଜମିଦାର ଲୋକ ପଠାଇ ମା-ସାଇକୁ ବାନ୍ଧି ଆଣିଲେ । ସେ ଚିତ୍କାର କରି କହିଲେ, "ବଦମାସ୍, ତୁ ମତେ ଠକିବାକୁ ସାହସ କଲୁ ?

Digitized by srujanika@gmail.com

ମୋ ଛଅଶହ ସୁନାମୋହର ଶୀଘ୍ର ଫେରେଇ ଦେଲେ ତୋର ଦଣ୍ଡ କୋହଳ କରିଦେବି । ନଚେତ୍ ତୋର ମୁଣ୍ଡକାଟ ହେବ ।”

“ଆଜ୍ଞା ମୋ ପାଖରେ ଅଛି ଯେ ଫେରେଇବି । ମୁଁ ସବୁ ସୁନାମୋହର ଖର୍ଚ୍ଚ କରିଦେଇଛି ।” ମା-ସାଇ ଉତ୍ତର ଦେଲା ।

“କ’ଣ ? ତୁ ସବୁ ଖର୍ଚ୍ଚ କରି ପକାଇଛୁ ? ତାକୁ ମାରି ମାରି ମାରିପକା ।” ଜମିଦାର ରାଗିଯାଇ ଚାକରମାନଙ୍କୁ ଆଦେଶ ଦେଲେ ।

ସେ ସମୟରେ ଖୁବ୍ ଥଣ୍ଡା ପାଗ, ଆକାଶରୁ ବରଫ ପଡ଼ୁଥାଏ । ଚାକରମାନେ କହିଲେ, “ଆଜ୍ଞା, ମା-ସାଇକୁ ମାରିଦେବା ସହଜ । କିନ୍ତୁ ସେ ମରିଗଲେ ତା’ ଶବକୁ ପୋଡ଼ିହେବନି ଏ ଥଣ୍ଡାରେ । କାଠରେ ନିଆଁ ଧରିବନି । ବରଫ ପଡ଼ିବା ବନ୍ଦହେଲେ ଆମେ ତାକୁ ଆସନ୍ତା କାଲି ମାରିଦେବା ।”

“ଆଚ୍ଛା ହଉ । ଆସନ୍ତା କାଲିକି ଥାଉ । କିନ୍ତୁ ସେ ଠକକୁ ଏହି ପ୍ରବଳ ଥଣ୍ଡାରେ ଆମ ଧାନଖଳା ମେରିରେ ବାନ୍ଧି ପକାଅ । ଶୀତ ଥଣ୍ଡାରେ ସେ ବରଫମାଡ଼ ଖାଇ ସେଇଠାରେ ମରିଯାଉ ।” ଜମିଦାର ଚଡ଼ାଗଳାରେ କହିଲେ ।

ଜମିଦାରଙ୍କ ଭୃତ୍ୟମାନେ ମୁନିବଙ୍କ ଆଦେଶ ସଙ୍ଗେ ସଙ୍ଗେ ପାଳନ କଲେ । ମା-ସାଇକୁ ଖୋଲା ଆକାଶ ତଳେ ଧାନଖଳା ମେରିରେ ବଳଦ ଭଳି ବାନ୍ଧି ଦିଆଗଲା । ଶୀତ ପୋଷାକ ତା’ ଦେହରୁ କାଢ଼ି ନିଆଯାଇ କେବଳ ଖଣ୍ଡିଏ ପିନ୍ଧିଥିବା ଲୁଗା ଓ ପୁରୁଣା ଚଦର ତା’ ଦେହରେ ରହିଲା । ଚାକରମାନେ ନିଜ ନିଜ ମଧ୍ୟରେ କଥାହେଲେ— ଆଜି ରାତିରେ ମା-ସାଇର ଅବସ୍ଥା କ’ଣ ହେବ ? ବିଚରା ନିଶ୍ଚୟ ମରିଯିବ । ଏ ଭୟଙ୍କର ଶୀତରେ ବରଫମାଡ଼ ସହି କ’ଣ ଆଉ କାଲି ସକାଳକୁ ସ୍ୱା’ର ଜୀବନ ଥିବ ?

ମା-ସାଇକୁ ବହୁତ ଶୀତ ଲାଗିଲା । ତା’ର ଦେହ ଥଣ୍ଡାରେ କୋଲମାରି ଥରିଲା । ବୋଝ ଉପରେ ନଳିତା ବିଡ଼ା ପରି ପ୍ରବଳ ଶୀତ

Digitized by srujanika@gmail.com

ସାଙ୍ଗକୁ ବରଫ ବର୍ଷା । ରାତ୍ର ଯେତେ ଯେତେ ଅଧିକ ହେଉଥାଏ ଥଣ୍ଡା ଆହୁରି ବେଶୀ ବେଶୀ ହେଉଥାଏ । କ୍ରମେ ଶୀତକଷ୍ଟ ଅସହ୍ୟ ହେଲା । ମା-ସାଇ ପ୍ରଭୁଙ୍କୁ ସ୍ମରଣ କଲା । ତାକୁ ଏକ ବୁଦ୍ଧି ଦିଶିଲା । ବଳଦ ମେଣ୍ଟ ଗୃହପଟେ ବୁଲି ଧାନ ବେଙ୍ଗଳା ପକାଇଲା ପରି ମେଣ୍ଟ ଗୃହପଟେ ସେ ଜୋରରେ ଘୂରିବାକୁ ଲଗିଲା । ତଦ୍ଦ୍ୱାରା ତାକୁ ଶୀତ ନ ଲାଗି ବରଂ ତା' ଦେହରୁ ଝାଳ ବୋହିଲା । ସେ ଗରମ ଅନୁଭବ କଲା । ଫଳରେ ଶୀତକଷ୍ଟରେ ସେ ମରି ନ ଯାଇ ଝାଳବୁହା ପରିଶ୍ରମରେ ଲାଗିପଡ଼ିଲା ।

ରାତି ପାହିଲାରୁ ଜମିଦାର ଜଣେ ଚାକରକୁ ପଠାଇଲେ ମା-ସାଇ ମରିଯାଇଛି କି ନା ଦେଖିଆସି ଖବର ଦେବାକୁ ।

ଚାକରଟି ସଙ୍ଗେ ସଙ୍ଗେ ଫେରି ପାଟିକରି କହିଲା, "ଆଶ୍ଚର୍ଯ୍ୟ କଥା, ମା-ସାଇ ବଞ୍ଚିଛି । ଗଲାରାତିରେ କି ହାଡ଼ଭଙ୍ଗା ଶୀତ ! ମାତ୍ର ତା'ର କିଛି ହୋଇ ନାହିଁ । ବରଂ ସେ ଝାଳରେ ଗାଧୋଇଲା ପରି ହୋଇଛି । ତାକୁ ଏତେ ଗରମ ଲାଗୁଛି ଯେ ସେ, ମତେ ଖଣ୍ଡିଏ ବିଞ୍ଚଣା ବିଞ୍ଚିହେବା ଲାଗି ମାଗୁଥିଲା ।" ଜମିଦାର ଧାଇଁଆସି ଦେଖିଲେ, ବାସ୍ତବିକ୍ ମା-ସାଇ ଗରମ ଅନୁଭବ କଲାପରି ଜଣାପଡ଼ୁଛି ।

ଜମିଦାର ଭାବିଲେ ଏଥିରେ କିଛି ରହସ୍ୟ ଥିଲାପରି ମନେ-ହେଉଛି । ସେ ତାକୁ ମାରିପକାଇବା ପୂର୍ବରୁ ଏହାର ରହସ୍ୟ ବୁଝିବା ଉଚିତ । ତେଣୁ ସେ ହସି ହସି ମା-ସାଇକୁ କହିଲେ, "ତତେ ଜ୍ୱର ହୋଇଛି କି ? ଏପରି ପ୍ରବଳ ଶୀତରେ ଖୋଲା ଆକାଶ ତଳେ ପୁଣି ଖାଲି ଲୁଗା ଚଦରଟିରେ ତତେ ଟିକିଏ ହେଲେ ଶୀତ ବାଧିଲା ପରି ଜଣାପଡ଼ୁନି । ଏହା ଅତି ଆଶ୍ଚର୍ଯ୍ୟ କଥା । ଏହା କିମିତି ସମ୍ଭବ ହେଲା ?"

"ନିର୍ଦ୍ଦୋଷକୁ ଦଣ୍ଡ ଦେଲେ ଯାହା ହୁଏ ତାହା ହିଁ ହେଲା । ଆପଣଙ୍କୁ ମୁଁ ବିକିଥିବା କୋକଟି ପ୍ରକୃତରେ କୁହୁକ-କୋକଶିଆଳି । ଆପଣ ତାକୁ ନିନ୍ଦା କରି କୌଣସି କଥା କହିଲା ପରି ମନେହେଉଛି । ଆପଣ କ'ଣ ଆପଣଙ୍କ ସ୍ତ୍ରୀଙ୍କୁ କୋକଶିଆଳିର ଅଦ୍ଭୁତ ଶକ୍ତି ବିଷୟରେ

Digitized by srujanika@gmail.com

କହିଲେ ଯାହା କି ସେ ବିଶ୍ୱାସ କଲେ ନାହିଁ ? ସେ କଥା ବୋଧହୁଏ କୋକ ଶୁଣିଲା ? ତେଣୁ ସେ ଆଉ ଫେରିଲାନି ।" ମା-ସାଇ କହିଲା ।

'ହଁ, ହଁ, ଠିକ୍ କଥା । ତୁମେ ଯାହା କହୁଛ ଠିକ୍ । କିନ୍ତୁ ବର୍ତ୍ତମାନ କୁହ, ତୁମକୁ, କାଲି ଥଣ୍ଡାରାତିରେ କିପରି ଏତେ ଗରମ ଲାଗିଲା ?

ମା-ସାଇ ଦୀର୍ଘନିଶ୍ୱାସ ପକାଇ କହିଲା, "ହାୟ, ଆପଣଙ୍କ ଭଳି କେତେ ଲୋକ ନିଜ ସମ୍ମୁଖରେ ଥିବା ଭଲ ଜିନିଷର ମୂଲ୍ୟ ବୁଝନ୍ତି ନାହିଁ । ଆପଣ ମୋର ଏହି ପୁରୁଣା ଚଦରଟାକୁ ସାମାନ୍ୟ ମନେ କରୁଛନ୍ତି କି ? ମୋର ଅଜା ଏ ଖଣ୍ଡିକ ମତେ ଉପହାର ଦେଇ ଏହାର କୁହୁକଶକ୍ତି କଥା କହିଥିଲେ । ଏହାକୁ ଦେହରେ ଘୋଡ଼ିହେଲେ ଗରମ ଦିନରେ ଥଣ୍ଡା ଲାଗିବ ଓ ଶୀତକାଳରେ ଦେହକୁ ଖୁବ୍ ଗରମ ରଖିବ । ବଡ଼ ଅଦ୍ଭୁତ ଶକ୍ତି ମୋର ଏ ଚଦର ଖଣ୍ଡିକର !"

ଜମିଦାର ମା-ସାଇ କଥା ଶୁଣି ଆବାକାବା ହୋଇଗଲେ । ସେ ତା' କଥାକୁ ପୂରା ବିଶ୍ୱାସ କରି ପକାଇଲେ । ଭୟଙ୍କର ଶୀତ । ରାତିସାରା ବରଫମାଡ଼ ସହି ଏହି ସାମାନ୍ୟ ଚଦର ଘୋଡ଼ିହୋଇ ତା'ର କୌଣସି କ୍ଷତି ନ ହୋଇ ଦେହରୁ ଝାଳ ବୋହିଲା, ଏଥିରେ ଆଉ ଅଧିକ ପ୍ରମାଣ କ'ଣ ଦରକାର ? ତହୁଁ ସେ ଆଗ୍ରହରେ କହି ପକାଇଲେ, 'ଏକଶତ ସ୍ୱର୍ଣ୍ଣମୁଦ୍ରା ନେଇ ତୁମର ଏ ଚଦର ଖଣ୍ଡିକ ମତେ ବିକିବ କି ?'

"ନା, ଏଥର ମୁଁ ଆପଣଙ୍କ ସହିତ ଦର କଷାକଷି କରିବାକୁ ଚାହେଁନା । ମୁଁ ମୋ ଅଜାଙ୍କ ସ୍ମୃତିକୁ ନିଜ ପାଖରୁ ଦୂରେଇ ଦେଇ ପାରିବିନି । ତା'ଛଡ଼ା ଏପରି କୁହୁକ-ଚଦରକୁ କିଏ ବା ନିଜ ପାଖରୁ ଛାଡ଼ିବାକୁ ଚାହିଁବ ? ଏ ଯେ ମୋର ଅମୂଲ୍ୟ-ସମ୍ପଦ ।"

ମା-ସାଇ, ମୁଁ ଏ ଚଦରଟିକୁ ନିଜ ପାଖରେ ରଖିବାକୁ ଏତେ ଆଗ୍ରହୀ ଯେ ମୁଁ ଏହାର ମୂଲ୍ୟ ବାବଦ ଦୁଇଶହ ସ୍ୱର୍ଣ୍ଣମୁଦ୍ରା ଦେବାକୁ ପ୍ରସ୍ତୁତ, ଜମିଦାର କହିଲେ ।

Digitized by srujanika@gmail.com

ମା-ସାଇ ଛଳନା କରି କହିଲା, "ବଡ଼ ଦୁଇଗୁଣରେ ମତେ ଆପଣ ପକାଇବେ ଦେଖୁଛି । ଅଜାଙ୍କ ସ୍ମୃତିଜଡ଼ିତ ଏ ଅମୂଲ୍ୟ ଚଦରଟି ମୋର ଅତି ଆଦରର ଧନ । ଆପଣ ଏଇଟିକୁ କିଣି ନେବାକୁ ଯଦି ଏତେ ଇଚ୍ଛୁକ ତା'ହେଲେ ମତେ ଗୁରିଶହ ସ୍ୱର୍ଣ୍ଣମୁଦ୍ରା ଦିଅନ୍ତୁ ।"

ଅତି ଦୁଃଖିତ ହେବାର ଛଳନା କରି ମା-ସାଇ ତା'ର ଛିଣ୍ଡା ପୁରୁଣା ଚଦରଟି ଜମିଦାରଙ୍କୁ ଦେଇ ଗୁରିଶହ ସ୍ୱର୍ଣ୍ଣମୁଦ୍ରା ପାଇଲା । ଖୁସିହୋଇ ଜମିଦାର ଆହୁରି ନିଜର ମୂଲ୍ୟବାନ୍ ପଶମ ଶାଲ ଚଦରଟି ମା-ସାଇକୁ ଦେଲେ । ବାହାରକୁ ଦୁଃଖିତ ହେବାର ଅଭିନୟ କରି ମନେ ମନେ ଖୁବ୍ ଖୁସିହୋଇ ମା-ସାଇ ନିଜ ଘରକୁ ଫେରିଗଲା ।

ଜମିଦାର ସେହି ମଇଳା ଚଦରଟି ସିଝାଇ ସଫା କରିବାକୁ ଜଣେ ଚାକରକୁ ଦେଲେ । ତାଙ୍କର ଆଜ୍ଞା ମୁତାବକ ଚାକର ତାଙ୍କ ଆଗରେ ଛିଣ୍ଡା ଚଦରଟି ସିଝାଇ, ସଫାକରି ଖରାରେ ଶୁଖାଇଲା । ଚଦରଟି ଶୁଖିଲା ପରେ ଜମିଦାର ଚଦରଟି ଘୋଡ଼ିହୋଇ ବସି ରହିଲେ । ଗର୍ବରେ ନିଜ ସ୍ତ୍ରୀଙ୍କୁ କହିଲେ ସେ ଏହି ଅଦ୍ଭୁତ ଶକ୍ତିଥିବା ଚଦର ପାଇଥିବାରୁ ତାଙ୍କୁ ଆଉ ଶୀତ କମ୍ପା ଗରମ ଲାଗିବ ନାହିଁ । ଏହା କହି ସେ ଆଉ କୌଣସି ଗରମପୋଷାକ ନ ପିନ୍ଧି ସେହି ଚଦରଟି ଘୋଡ଼ିହୋଇ ବସିଲେ । କିନ୍ତୁ କିଛି ସମୟ ପରେ ଅତ୍ୟଧିକ ଥଣ୍ଡାଯୋଗୁଁ ତାଙ୍କୁ ଶୀତ ଲାଗିଲା । ସେ ବୁଝିପାରିଲେ ଯେ ମା-ସାଇ ପୁଣି ତାଙ୍କୁ ବୋକା ବନେଇ ଠକି ଦେଇଛି । ଏଥର ସେ ମା-ସାଇକୁ ଜୀବନରେ ମାରିଦେବାକୁ ସ୍ଥିର କଲେ ।

ଜମିଦାରଙ୍କ ଚାକରମାନେ ମା-ସାଇକୁ ଧରି ଆଣିଲେ । ଜମିଦାର ତାକୁ ରାଗରେ କହିଲେ, 'ମତେ ପୁଣି ଠକିଲୁ । ଆଜି ତୋର ଜୀବନ ମୁଁ ନେବି ।' ଏହା କହି ସେ ତାକୁ ଏକ ବଡ଼ ଅଖାରେ ପୂରାଇ ବାନ୍ଧିବାକୁ ଚାକରମାନଙ୍କୁ ହୁକୁମ ଦେଲେ । ମା-ସାଇକୁ ଏକ ବଡ଼ ଅଖାରେ ପୂରାଇ ବାନ୍ଧି ସେହି ଅଖାକୁ ସମୁଦ୍ର କୂଳରେ ଥିବା ଏକ ବଡ଼ ଗଛ ଡାଳରେ ବାନ୍ଧି ଦିଆଗଲା । ସେହି ଗଛଟି ସମୁଦ୍ର ଜଳଆଡ଼କୁ ଢଳି ପଡ଼ିଥିବାରୁ ଗଛକୁ ମୂଳରୁ ହାଣିଦେଲେ ଗଛଟି ସାଗର ଜଳରେ ପଡ଼ିଯିବ ଏବଂ

Digitized by srujanika@gmail.com

ମା-ସାଇ ଜଳରେ ବୁଡ଼ି ମରିବ । ଅଖାରେ ବନ୍ଧା ହୋଇଥିବାରୁ ସେ ଆଉ ପହଁରି ନିଜ ଜୀବନ ରକ୍ଷା କରିବାକୁ ସମର୍ଥ ହେବ ନାହିଁ । ସାଗର



ଜଳରେ ନିଶ୍ଚୟ ବୁଡ଼ି ମରିବ । ଚାକରମାନେ ଗଛକୁ ମୂଳରୁ ହାଣିବାକୁ ଲାଗିଲେ । ଗଛର ଗଣ୍ଡିଟି ଖୁବ୍ ମୋଟା । ବହୁତ ସମୟ ଲାଗିଲେ ବି ଗଛକଟା ଶେଷ ହେଲାନି । ମଧ୍ୟାହ୍ନ ହେବାରୁ ଚାକରମାନଙ୍କୁ ଭୋକ ଲାଗିଲା । ସେମାନେ କହିଲେ, "ଆଜ୍ଞା, ଗଛକଟା ତ ଅଧା ଅଛି । ଆମେ ଖାଇସାରି ଆସି କାଟିବା ।" ଜମିଦାରଙ୍କୁ ମଧ୍ୟ ସେତେବେଳକୁ ଘର ଭୋକ ଲାଗିଲାଣି । ସେ କହିଲେ, 'ହଉ ଚାଲ, ଖାଇସାରି ଆସି ଉପରଓଳି ମା-ସାଇ ମରିବା ଦୃଶ୍ୟ ଦେଖିବା । ସେଇଟା ତ ଅଖାରେ ବନ୍ଧା ହୋଇଛି, ଗଛ ଡାଳରେ ବନ୍ଧାହୋଇ କିଛି ସମୟ ଏ ପ୍ରକାର ଶାସ୍ତି ପାଉ ।' ସମସ୍ତେ ଜମିଦାରଙ୍କ ଘରକୁ ଖାଇବାକୁ ଗଲେ ।

ଯୋଗକୁ ସେହିବାଟେ ସେଦିନ ମଧ୍ୟାହ୍ନରେ ଜମିଦାରଙ୍କ ଶଶୁର ବୁଢ଼ା ନିଜ ଗାଁରୁ ଜୋଇଁ ଘରକୁ ଆସୁଥିଲେ । ବୁଢ଼ା ପିଠିରେ ଏକ ବଡ଼ କୁଜ । ବୁଢ଼ା ଦେଖିଲା ଗଛ ଅଗରେ ଅଖାରେ କ'ଣ ଗୋଟାଏ ଖସ୍ ଖସ୍ ହେଉଛି ଓ ପାଟି କରୁଛି । ବୁଢ଼ା କହିଲା, "ସେଠାରେ କିଏ ?" ଉତ୍ତର ମିଳିଲା, "ମୁଁ ମା-ସାଇ" । ବୁଢ଼ା ମା-ସାଇକୁ ଆଗରୁ

Digitized by srujanika@gmail.com

ଛାଡ଼ିଥିଲା । ସ୍ୱର ବାଣପାରି ପଚାରିଲା, "ସେଠାରେ ଏପରି ଅବସ୍ଥାରେ କାହିଁକି ?" ମା-ସାଇର ତ ଉପସ୍ଥିତ ବୁଦ୍ଧି ପ୍ରଖର । ସେ ମଧ୍ୟ ପାନ୍ଥି ସ୍ୱରରୁ ଜାଣିପାରିଲା ବୁଢ଼ା ହେଉଛି ଜମିଦାରଙ୍କ ଶ୍ୱଶୁର । ତହୁଁ ଛଳନା କରି କହିଲା; "ମୋ ପିଠିରେ ଗୋଟିଏ କୁଜ ହେବାରୁ ମୁଁ ଏଠାରେ ଏପରି ଘଣ୍ଟାଏ ହେଲା ଅଖାରେ ବନ୍ଧାହୋଇ ଝୁଲିବାରୁ ମୋ କୁଜ ଭଲ ହୋଇଗଲାଣି । ମୁଁ ଅପେକ୍ଷା କରିଛି କଏ ମୋ ଘରୁ ଲୋକ ଆସିଲେ ମତେ ଏଠାରୁ ଫିଟେଇ ଦେବ । ମୁଁ ଭାବୁଛି ମୋ ଘରକରି ଟି ଆଉ ଅଳ୍ପ ସମୟ ମଧ୍ୟରେ ଏଠାରେ ପହଞ୍ଚିବ । ଏଠାରେ କୁହୁକ-ଅଖାରେ ବନ୍ଧାହୋଇ ଝୁଲିବାକୁ ମତେ ଏକଶତ ରୌପ୍ୟମୁଦ୍ରା ଦେବାକୁ ପଡ଼ିଛି । ଯାହାହେଉ, କୁଜ ରୋଗଟା ଭଲ ହୋଇଗଲା ।

ନିଜର କୁଜ ଭଲ କରିବାକୁ ବୁଢ଼ା ମନ ଉଚ୍ଛନ୍ନ ହେଲା । ସେ କହିଲା, "ମତେ ଟିକଏ ସେହି କୁହୁକ-ଅଖାରେ ଝୁଲାଇ ମୋ କୁଜ ଭଲ କରିଦେବ କି ? ମୁଁ ଶହେ ରୌପ୍ୟମୁଦ୍ରା ଦେବି ।"

"ଆପଣଙ୍କର କୁଜ ପୁରୁଣା ଓ ବଡ଼ । ପ୍ରାୟ ଦୁଇଘଣ୍ଟା କି ତିନିଘଣ୍ଟା ଲାଗିବ । ଆପଣଙ୍କୁ ତିନିଶହ ରୌପ୍ୟମୁଦ୍ରା ଦେବାକୁ ପଡ଼ିବ ।" ମା-ସାଇ ଉତ୍ତର ଦେଲା ।

"ନାହିଁ, ନାହିଁ, ମୋ ପାଖରେ ମାତ୍ର ଦୁଇଶହ ରୌପ୍ୟମୁଦ୍ରା ଅଛି ।" ବୁଢ଼ା କହିଲା ।

"ହଉ ହେଲା, ଏହି କୁହୁକ-ଅଖାର ମାଲିକକୁ ମୁଁ ବୁଝାବୋଲି କରି ରାଜି କରାଇବି । ଆପଣ ଦୁଇଶହ ରୌପ୍ୟ ମୁଦ୍ରା ଦିଅନ୍ତୁ ।" ମା-ସାଇ କହିଲା ।

ଦୈବାତ୍ ଦୁଇଜଣ ଭିକାରି ସେବାଟେ ଯାଉଥିଲେ । ସେ ଦୁହେଁ ମା-ସାଇର ପାଟିତୁଣ୍ଡ ଶୁଣି ଗଛରେ ଚଢ଼ି ତାକୁ ଅଖାରୁ ଫିଟାଇ ଆଣିଲେ । ମା-ସାଇ ଭିକାରି ଦୁହିଁଙ୍କୁ ଆଖିଠାରି ଅତି ଆନନ୍ଦରେ ନାଚିଯାଇ କହିଲା, "ଦେଖିଲ ମୋ ପିଠି କୁଜ କିମିତି ଭଲ ହୋଇଗଲା । ବାଃ ବାଃ ରେ କୁହୁକ-ଅଖା ।"

Digitized by srujanika@gmail.com

ମା-ଷାଇ ବୁଢ଼ାଠାରୁ ଦୁଇଶହ ରୌପ୍ୟମୁଦ୍ରା ନେଇ ତାକୁ ସେହି ଅଖାରେ ପୂରାଇ ବାନ୍ଧି ସମୁଦ୍ର ଜଳଆଡ଼କୁ ନଇଁ ପଡ଼ିଥିବା ଗଛଡାଳରେ ବାନ୍ଧି ଖୁସିମନରେ ନିଜ ଘରକୁ ଫେରିଗଲା ।

ମଧ୍ୟାହ୍ନ ଭୋଜନ ପରେ ଜମିଦାର ଚାକରମାନଙ୍କ ସହିତ ସମୁଦ୍ର କୂଳକୁ ଗଛ ହାଣିବାକୁ ଆସିଲେ । ଜମିଦାର ପାଟିକରି କହିଲେ, ବେଗି ବେଗି ଗଛଟାକୁ ହାଣିପକା । ଗଛ ସାଗରରେ ପଡ଼ିଯାଉ ଓ ଠକ ମା-ସାଇ ପାଣିରେ ବୁଡ଼ିମରୁ ।

"ମତେ ଉଦ୍ଧାର କର, ମୋ ଜୀବନ ରକ୍ଷାକର ବାପ, ମୁଁ ତୁମର ଶ୍ୱଶୁର ବୁଢ଼ା ।" ପ୍ରାଣ ବିକଳରେ ବୁଢ଼ା ଅଖା ଭିତରୁ ରଡ଼ି ଛାଡ଼ିଲା ।

ଜମିଦାର ଭାବିଲେ ମା-ସାଇ ଛଳନା କରି ଏପରି କହୁଛି । ତାଙ୍କ ମନ ରାଗରେ ଜଳୁଥିବାରୁ ସେ ନିଜ ଶ୍ୱଶୁର ସ୍ୱର ମଧ୍ୟ ବାରି-ପାରିଲେନି । ଓଲଟି ଶୀଘ୍ର ଶୀଘ୍ର ଗଛ କାଟିବାକୁ ଚାକରମାନଙ୍କୁ ଆଦେଶ ଦେଲେ । ଗଛକଟା ଜୋର୍‌ସୋର୍‌ରେ ଚାଲିଲା । ଶ୍ୱଶୁର ବୁଢ଼ାର କରୁଣ ଚିତ୍କାରକୁ ଜମିଦାର କର୍ଣ୍ଣପାତ କଲେ ନାହିଁ । ସେ ନିଶ୍ଚିତଭାବେ ଧରି-ନେଇଥିଲେ ମା-ସାଇ ଛଳନା କରି ଚିତ୍କାର କରୁଛି । ଗଛଟି ମଡ଼ ମଡ଼ ଶବ୍ଦକରି ସମୁଦ୍ର ଜଳରେ ପଡ଼ିଗଲା । ସେ ଅଟ୍ଟହାସ୍ୟ କରି କହିଲେ, "ଯା' ଯା'ରେ ଠକ ସାଗର-ରଜାଙ୍କୁ ଭେଟିବୁ ।"

କିଛିଦିନ ପରେ ଲୋକେ ମା-ସାଇକୁ ହାଟରେ ଦେଖିଲେ । ସେ ଦଳେ ବତକ ଘଉଡ଼ାଇ ଯାଉଥିଲା । ସେ ଜାଣି ଜାଣି ବତକ ଦଳ ସହ ଜମିଦାରଙ୍କ ଘର ପାଖ ରାସ୍ତା ବାଟଦେଇ ଯାଉଥିଲା । ତା' ହାତରେ ଥିଲା ଏକ ଲମ୍ବା ଡେଙ୍ଗା ବାଉଁଶ । ବାଉଁଶ ଅଗରେ ନାଲି ଫିତା ଗୁଡ଼ା ହୋଇଥିଲା । ଜମିଦାର ତାକୁ ଦେଖି ତାଙ୍କର ବିସ୍ମୟର ସୀମା ରହିଲାନି । ତହୁଁ ସେ କହିଲେ, "ଆରେ ତୁ ସମୁଦ୍ରରେ ପଡ଼ି ମରିଥିଲୁ; କେମିତି ପୁଣି ଜୀବନ ପାଇ ଆସିଲୁ ?"

Digitized by srujanika@gmail.com

"ଭଲଲୋକ କେବେ ସହଜରେ ମରେ ନାହିଁ । ସେଦିନ ମୁଁ ଯେତେବେଳେ ସାଗରରେ ପଡ଼ିଗଲି ସାଗର ଜଳର ବହୁତ ତଳକୁ ଚାଲିଗଲି । ସାଗର-ରଜା ଦୂତ ପଠାଇ ତାଙ୍କ ଉଆସକୁ ମତେ ଆଦରରେ ପାଛୋଟି ନେଇଗଲେ । ତାଙ୍କ ଉଆସରେ ମତେ ରାଜକୀୟ ଅଭ୍ୟର୍ଥନା ଦିଆଗଲା । ମୁଁ ଦୂତ ସାଙ୍ଗରେ ରାଜବାଟୀର ମୁଖ୍ୟ ଦ୍ୱାର ପାଖରେ ପହଞ୍ଚି ଦେଖିଲି ସୁବର୍ଣ୍ଣ ସୁପୁର । ସୁନାରେ ତିଆରି, ହୀରାମାଳା ଖଚିତ ଅପୂର୍ବ ସୌନ୍ଦର୍ଯ୍ୟମୟ ପ୍ରାସାଦ । ମୋ ଉପସ୍ଥିତି ଉପଲକ୍ଷେ ଉତ୍ସବର ସମାପନ ପରେ ରାଜା, ରାଣୀ ଓ ତାଙ୍କର ଅପୂର୍ବ ସୁନ୍ଦରୀ କନ୍ୟାଙ୍କ ସହିତ ଏକ ଟେବୁଲ୍‌ରେ ବସି ମତେ ବହୁତ ପ୍ରକାର ସୁସ୍ୱାଦୁ ଖାଦ୍ୟ ଭୋଜନ କରିବାକୁ ପଡ଼ିଲା । ସେସବୁ ଖାଦ୍ୟ ଓ ପାନୀୟ ମୁଁ ଜୀବନରେ କେବେ ଚାଖି ନ ଥିଲି । ସବୁ ପ୍ରକାର ଖାଦ୍ୟ ଅତ୍ୟନ୍ତ ରୁଚିକର । ଅମୃତ ପରି ଲାଗୁଥାଏ । ତା'ପରେ ଅପୂର୍ବ ସୁନ୍ଦରୀ ସାଗରକନ୍ୟା, ମତ୍ସ୍ୟକନ୍ୟା ଓ ଜଳପରୀମାନଙ୍କ ଗହଣରେ ମତେ ସାଗର ରଜାଙ୍କ ଉଦ୍ୟାନରେ ଭ୍ରମଣ ନିମନ୍ତେ ନିଆଗଲା । ଦୁଃଖର କଥା ତୁମ ଭଳି ବିଳାସପ୍ରିୟ ଜମିଦାର ମୋ ସାଙ୍ଗରେ ନ ଥିଲେ । ଆଃ କି ମଜା ! ସ୍ୱର୍ଗ ସୁଖଠୁଁ ବଳି । ସେଠାରେ କେତେ କେତେ ସୁନ୍ଦର ଓ ଆଶ୍ଚର୍ଯ୍ୟଜନକ ଜୀବ ଓ ଜିନିଷ ସବୁ ଦେଖିଲି, ଭାଷାରେ ବର୍ଣ୍ଣନା କରିପାରୁ ନାହିଁ । ସେଠାକାର ଜଳହସ୍ତୀ, ଜଳଅଶ୍ୱ ଓ ଅନ୍ୟାନ୍ୟ ଜୀବ ସମସ୍ତେ ସୁନାରେ ତିଆରି ହେଲାପରି ଚକ୍ ଚକ୍ ଝଲମଲ୍ । ମଣିମୁକ୍ତା, ହୀରାମାଳା ଗୃହଆଡ଼େ ଭରପୂର । ପକ୍ଷୀମାନେ ମଧ୍ୟ ସୁନ୍ଦର ଓ ସୁବର୍ଣ୍ଣ ନିର୍ମିତ । ସେଠାକାର ପୋଷାକ ପିନ୍ଧିଲେ ଶୀତକଷ୍ଟ ନାହିଁ କି ଗରମ ନାହିଁ କିମ୍ବା ଦେହରେ ପାଣି ଲାଗିବ ନାହିଁ । ଆଃ କେତେ କେତେ ଅପୂର୍ବ ସୁନ୍ଦର ପଦାର୍ଥମାନ ! ଅଲକାପୁରୀ କିମ୍ବା କୁବେରପୁରୀକୁ ବଳି ସାଗର-ରଜାଙ୍କ ପୁରୀ । ମୁଁ ସେଠାରେ ସାଗର-ରାଜାଙ୍କ ବିଶିଷ୍ଟ ଅତିଥି ରୂପେ ଦୁଇଦିନ ରହିଲି । ତାଙ୍କର ଅନିନ୍ଦ୍ୟ ସୁନ୍ଦରୀ କନ୍ୟାକୁ ବିଭାହୋଇ ସାଗର-ରାଜାଙ୍କ ଜୋଇଁ ହୋଇ ସେଠାରେ ରହିବାକୁ ସେ ମତେ ପ୍ରସ୍ତାବ ଦେଲେ । କିନ୍ତୁ ମୋ ପରି ସରଳ ଲୋକ ନିଜର ଘରଦ୍ୱାର ଛାଡ଼ି ସେଠାରେ ରାଜାଙ୍କ ଜୋଇଁ ରୂପେ ରହିବାକୁ ପସନ୍ଦ କଲିନାହିଁ । ମୁଁ ବିଭା ହୋଇଛି, ତେଣୁ ଏ ପ୍ରସ୍ତାବ ମୋର ଗ୍ରହଣୀୟ ନୁହେଁ ବୋଲି କହି କ୍ଷମା ମାଗିଲି । ସାଗର-ରାଜା ମୋର

Digitized by srujanika@gmail.com

ବ୍ୟବହାର, ଚତୁରତା ଓ ବୁଦ୍ଧିରେ ମୁଗ୍ଧ ହୋଇଥିଲେ । ତେଣୁ ସେ କହିଲେ, ଆଚ୍ଛା ରାଜକୁମାରୀଙ୍କୁ ବିଭା ନ ହେଲେ ନାହିଁ, ମୋ ରାଜ୍ୟର ଅନ୍ୟାନ୍ୟ ସୁନ୍ଦରୀ କୁମାରୀଗଣ, ମତ୍ସ୍ୟକନ୍ୟାଗଣ, ଜଳପରୀମାନଙ୍କ ମଧ୍ୟରୁ ତୁମ ପସନ୍ଦ ମୁତାବକ ଜଣେ ସୁନ୍ଦରୀ କୁମାରୀଙ୍କୁ ବାଛି ନିଜ ସ୍ତ୍ରୀ ରୂପେ ଗ୍ରହଣ କର । ଯାହାକୁ ବାଛିବ ତୁମ ସଙ୍ଗରେ ତାକୁ ମର୍ତ୍ତ୍ୟକୁ ମଧ୍ୟ ଗ୍ଲାଡ଼ି ଦିଆଯିବ । କିନ୍ତୁ ମୋର ସେଥିରେ ଏକା ଉତ୍ତର—ଆଜ୍ଞା, ମୁଁ ବିବାହିତ । ତହୁଁ ସାଗର-ରାଜା କହିଲେ, ତୁମେ ମୋର ସମ୍ମାନିତ ଅତିଥି, ମୋର ପୁଅ ପରି । ତୁମେ ଖାଲି ହାତରେ ମର୍ତ୍ତ୍ୟକୁ ଫେରିଗଲେ ମୋର ନିନ୍ଦା ହେବ, ବଡ଼ ଅସୁନ୍ଦର ଓ ଲଜ୍ଜ୍ୟାକର ହେବ ମୋ ପକ୍ଷେ । ତେଣୁ ତୁମର ଯେଉଁ ଜିନିଷ ଇଚ୍ଛା ବାଛିକରି ଏକ ଅମୂଲ୍ୟ ପଦାର୍ଥ ନେଇପାର । ମୁଁ କହିଲି ଅମୂଲ୍ୟ ପଦାର୍ଥ ମୋର ଆବଶ୍ୟକ ନାହିଁ । ମୋର ଦୁଇଟି ଅତି ଅମୂଲ୍ୟ ପଦାର୍ଥ ଥିଲା; କିନ୍ତୁ ସେହି ଦୁଇଟି ପଦାର୍ଥକୁ ମୁଁ ଜମିଦାରଙ୍କୁ ବିକିବାରୁ ତାହା ମୋର ବିପଦ ଓ ଦୁଃଖଦୁର୍ଦ୍ଦଶାର କାରଣ ହେଲା । ସାଗର-ରଜା ଦୁଃଖିତ ହୋଇ କହିଲେ, ତା'ହେଲେ ଯାହିତାହି ଗୋଟାଏ କିଛି ଜିନିଷ ବା ପଶୁପକ୍ଷୀ ନିଅ, ନୋହିଲେ ମତେ ଅପମାନ ହେବ । ମୁଁ ବାଧ୍ୟ ହୋଇ ଏହି ବତକଦଳ ଆଣିଲି । ମୁଁ ସେଠାରୁ ଯେତେବେଳେ ମେଲାଣିନେଇ ଆସିଲି ସାଗର-ରାଜା ମୋ ହାତରେ ଚୁମ୍ବା ଦେଲେ । ସେ କହିଲେ, ବନ୍ଧୁ, ମୁଁ ତୁମ ଉପରେ ଭାରି ଖୁସି । ମୋ ରାଇଜକୁ ତୁମେ ଯେତେବେଳେ ଇଚ୍ଛା କରିବ, ବୁଲି ଆସିବ । ତୁମେ ଆସିଲାବେଳେ ମାହାଳରେ ନିଅ ଥର ଶଙ୍ଖକରି ଉଚ୍ଚ ସ୍ୱରରେ କହିବ, ମୁଁ ମା-ସାଇ, ଜଣେ ଉତ୍ତମ, ସରଳ ଓ ସ୍ପଷ୍ଟବାଦୀ ଯୁବକ । ସଙ୍ଗେ ସଙ୍ଗେ ମୋ ରାଜ୍ୟର ମୁଖ୍ୟ ଦ୍ୱାର ଖୋଲିଯିବ ଏବଂ ତୁମକୁ ମୋ ଦୂତମାନେ ପାଛୋଟି ଆଣିବେ । ତା'ପରେ ମୁଁ ସାଗର-ରାଜାଙ୍କୁ ନମସ୍କାର କରି ତାଙ୍କଠୁଁ ବିଦାୟ ନେଇ ଚାଲି ଆସିଲି ।

ଜମିଦାର ମା-ସାଇର ସାଗର-ରାଜା ସୁବର୍ଣ୍ଣମୟପୁରୀର ବର୍ଣ୍ଣନା ଶୁଣି ତାଟକା ହୋଇଗଲେ । ସେ ମନେ ମନେ ଭାବୁଥିଲେ କେଡ଼େ ନିର୍ବୋଧ, ନିପଟ ଓଲୁ ଏ ମା-ସାଇ ! ତା' ସ୍ଥାନରେ ସେ ଯଦି ଏପରି ସୁଯୋଗ ପାଇଥାନ୍ତେ ତେବେ ସମସ୍ତ ସୁନ୍ଦରୀ-କନ୍ୟାଗଣଙ୍କୁ ବିଭାହୋଇ

Digitized by srujanika@gmail.com

ରାଜକୁମାରୀଙ୍କ ପାଣିଗ୍ରହଣ କରି ପ୍ରଥମେ ସାଗରରଜାର କୋଇଁ ହୋଇ ତା'ପରେ ତାକୁ କୌଣସି ଉପାୟରେ ମାରି ସେ ନିଜେ ସାଗର-ରଜା ହୋଇଥାନ୍ତେ ଓ ରାଜକୁମାରୀଙ୍କୁ ପାଟରାଣୀ କରିଥାନ୍ତେ। ସାଗରପୁରୀର ସମସ୍ତ ସମ୍ପଦର ମାଲିକ ହୋଇଥାନ୍ତେ । ତହୁଁ ସେ ଅତ୍ୟନ୍ତ ଉତ୍ଫୁଲ୍ଲ ହୋଇ କହିପକାଇଲେ, 'ମା-ସାଇ, ମୁଁ ମୋର ସମସ୍ତ ଧନସମ୍ପଦ ତୁମକୁ ଦେବାକୁ ପ୍ରସ୍ତୁତ, ତୁମେ ମତେ ସାଗର-ରଜାପୁରୀରେ ପହଞ୍ଚାଇ ପାରିବ କି ?'

"ନା, ନା, ଆଉ ଆପଣଙ୍କ ସହିତ ମୋର କୌଣସି ସମ୍ପର୍କ ନାହିଁ। ମୁଁ ଆପଣଙ୍କ ଧନସମ୍ପଦ ଚାହେଁନା । ଅଯଥାରେ ଥରକୁଥର ବିପଦ ବରଣ କରିବାକୁ ମୁଁ କାହିଁକି ଆଗଭର ହେବି ?" ମା-ସାଇ ଉତ୍ତର ଦେଲା ।

ଲୋଭୀ ଜମିଦାର କହିଲେ, 'ମତେ କ୍ଷମାକର। ମୋର ଅଜ୍ଞାନର ଭୁଲ ଲାଗି ମତେ କ୍ଷମାକର । ମା-ସାଇ, ମୁଁ ଅଯଥାରେ ତୁମକୁ ଭୁଲ୍ ବୁଝିଥିଲି, ଏଣିକି ମୁଁ ତୁମକୁ ସମ୍ମାନ କରିବି। ତୁମକୁ ମୁଁ ଖୁବ୍ ଭଲପାଏ। ତୁମ ପରି ସୁଯୋଗ୍ୟ ବ୍ୟକ୍ତିଙ୍କୁ ମୁଁ ପସନ୍ଦ କରେ ।' ତା'ପରେ ସେ ମା-ସାଇ ପଦତଳେ ଆଣ୍ଠୋଇପଡ଼ି ବିମ୍ରତାରେ କହିଲେ, 'ବନ୍ଧୁ ମା-ସାଇ, ମତେ କ'ଣ କ୍ଷମା ଦେଇନାହଁ ? ମତେ ଦୟାକରି ସାଗର-ରଜାପୁରୀରେ ପହଞ୍ଚାଇ ଦିଅ ବନ୍ଧୁ !'

"ଆପଣ ଏପରି ଉଚ୍ଛନ୍ନ କାହିଁକି ହେଉଛନ୍ତି ? ଆପଣଙ୍କ ଆକୁଳ ପ୍ରାର୍ଥନା ଦେଖି ଦୟା ହେଉଛି। ହଉ ମୁଁ ଥରେ ମାତ୍ର ଆପଣଙ୍କୁ ସେଠାକୁ ନେବି। କିନ୍ତୁ ମୁଁ ଯାହା କହିବି ତାହା ଅକ୍ଷରେ ଅକ୍ଷରେ ମାନିଲେ ଆପଣଙ୍କୁ ସାଗର-ରଜାଙ୍କ ପାଖକୁ ନେଇ ଦେବି । ପ୍ରଥମ କଥା ହେଲା ଆପଣ ମୋ ସଙ୍ଗରେ କେଉଁଠାକୁ ଯାଉଛନ୍ତି କାହାରିକୁ କିଛି କହିବେ ନାହିଁ। ଦ୍ୱିତୀୟ କଥା ହେଲା ଆବଶ୍ୟକୀୟ ଜିନିଷ, ଯଥା, ଏକ ଢୋଲ ଡଙ୍ଗା, ମାଣିରେ ଓ ଆଉ ମାଦଳ ଏବଂ ବାଜା ବଜାଇବାକୁ ଏକ ଛୋଟ ଲୁହା ହାତ ମତେ ଯୋଗାଇଦେବାକୁ ହେବ" ମା-ସାଇ କହିଲା ।

• । ଜମିଦାର ଖୁସି ହୋଇ ସଙ୍ଗେ ସଙ୍ଗେ ଏ ସବୁ ଜିନିଷ ଆୟୋଜନ କରିଦେଲେ। କାହାରିକୁ କିଛି ନ ଜଣାଇ ସେ ମା-ସାଇ ସଙ୍ଗରେ ସମୁଦ୍ର

Digitized by srujanika@gmail.com

କୂଳକୁ ଗଲେ । ତା'ପରେ ସେ ଦୁହେଁ ଡ଼ଙ୍ଗାରେ ବସି ସମୁଦ୍ର ମଝିକୁ ଗଲେ । ମାଟି ତିଆରି ବାଦ୍ୟଯନ୍ତ୍ର—ମାଦଳ, ପାଖରେ ଥାଏ । ମାଦଳ ଉପରେ ଜମିଦାର ବସିଲେ ଓ ଡ଼ଙ୍ଗାରେ ମା-ସାଇ ରହିଲା । ମା-ସାଇ ଆସ୍ତେ ଆସ୍ତେ ଡ଼ଙ୍ଗାରେ ଥରେ ଦୁଇଥର ଲୁହା ବାଡ଼ି ଦ୍ୱାରା ଆଘାତ କରି ଶବ୍ଦ କଲା । ଜମିଦାର ସାଗର-ରଜାଙ୍କର ସୁବର୍ଣ୍ଣପୁରୀରେ ପହଞ୍ଚିବାକୁ ଏତେ ବ୍ୟଗ୍ର ହୋଇ ପଡ଼ିଥିଲେ ଯେ ସେ କହିଲେ ମୋର ଏହି ମାଦଳରେ ଲୁହା ଛଡ଼ି ଜୋର୍‌ରେ ବାଡ଼େଇଲେ ସିନା ଭଲ ଶବ୍ଦ ହେବ ଓ ସାଗର-ରଜା ଶୁଣିପାରିବେ ।' ମା-ସାଇ



ଠାଁ ଠାଁ କରି ମାଦଳରେ ଆଘାତ କଲେ । ଜମିଦାର କହୁଥାନ୍ତି 'ଆହୁରି ଜୋର୍‌ରେ, ଆହୁରି ଜୋର୍‌ରେ । ତୁମର ସବୁ ଶକ୍ତି ଖଟାଇ ଜୋର୍‌ରେ ମାଦଳ ବଜାଅ, ସାଗର-ରଜା ଶୁଣିପାରିବେ ।' ମା-ସାଇ ଖୁବ୍ ଜୋର୍‌ରେ ମାଦଳରେ ଲୁହା ଛଡ଼ି ଦ୍ୱାରା ଆଘାତ କରି ଉଚ୍ଚ ସ୍ୱରରେ କହିଲା---ମୁଁ ମା-ସାଇ, ଜଣେ ଉତ୍ତମ ଓ ସ୍ପଷ୍ଟବାଦୀ ଯୁବକ । ଏତେ ଜୋର୍‌ରେ ଲୁହା ଛଡ଼ି ଦ୍ୱାରା ବାଡ଼ିଆ ହେବାରୁ ମାଟି ମାଦଳ ଭାଙ୍ଗିଗଲା ଓ ଜମିଦାର ସମୁଦ୍ର ଜଳରେ ବୁଡ଼ି ମଲେ । ଡ଼ଙ୍ଗା ବାହି ଆଣି ମା-ସାଇ ନିରାପଦରେ କୂଳକୁ ଆସିଲା । ସେ ଆନନ୍ଦରେ ନିଜ ଘରକୁ ଫେରିଲା । ବୁଦ୍ଧି ବଳରେ ସେ ସମସ୍ତ ବିପଦରୁ ରକ୍ଷା ପାଇଲା ।

Digitized by srujanika@gmail.com

## ଲୁହାପାଣ ଜନ୍ମକଲା ଛୁଆ

ଆଗ କାଳର କଥା । ଚୀନ୍ ଦେଶରେ ନାସିରୁଦ୍ଦିନ୍ ଅବନ୍ତୀ ନାମରେ ଜଣେ ଚତୁର ଲୋକ ଥିଲା । ଥରେ ସେ ଜଣେ ଧନୀଲୋକ ଠାରୁ ଖୁବ୍ ବଡ଼ ଲୁହାପାଣଟିଏ କିଛିଦିନ ବ୍ୟବହାର ଲାଗି ମାଗି ଆଣିଲା । ଧନୀଲୋକ ଅତ୍ୟନ୍ତ କୃପଣ ଓ ଅର୍ଥଲୋଭୀ । ସେ କାହାରିକୁ କିଛି ଦିଅନ୍ତି ନାହିଁ । ଅବନ୍ତୀକୁ ସେ ବଡ଼ ଲୁହାପାଣଟିଏ ଦେବାରୁ ଲୋକେ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ସେ ଅବନ୍ତୀକୁ ବଡ଼ ଲୁହାପାଣଟି କିଛିଦିନ ବ୍ୟବହାର କରିବାକୁ ଦେଇ ସତେ ଯେମିତି ଏକ ବଡ଼ ଧରଣର ଋଣ ଦେଲା ପରି ମନେ କରୁଥିଲେ । ଅବନ୍ତୀ ପରି ଜଣେ ଜଣାଶୁଣା ଓ ବୁଦ୍ଧିଆ ଲୋକ ତାଙ୍କଠାରୁ ଋଣ ନେଇଛି ବୋଲି ଭାବି ସେ ମନେ ମନେ ଖୁସି ହେଉଥିଲେ ।

କିଛିଦିନ ପରେ ଅବନ୍ତୀ ଧନୀଲୋକଙ୍କୁ କହିଲା, "ମୋର ଅଭିନନ୍ଦନ ନିଅନ୍ତୁ ।"

'କାହିଁକି ? ମୋର କ'ଣ ହେଲାକି ?' ଧନୀଲୋକ କହିଲେ ।

"ଆପଣଙ୍କ ବଡ଼ ଲୁହାପାଣ ଏକ ପୁଅ ଜନ୍ମ କରିଛି । ଏହା କ'ଣ ଶୁଭ ଖବର ନୁହେଁ ? ଏଥିଲାଗି କ'ଣ ଆପଣ ଅଭିନନ୍ଦିତ ହେବା ଉଚିତ ନୁହେଁ ?" ଅବନ୍ତୀ ଉତ୍ତର ଦେଲା ।

'ନିର୍ବୋଧ । ଓଲୁ । ଲୁହାପାଣ କ'ଣ କେବେ ପୁଅ ଜନ୍ମ କରେ ?' ଧନୀଲୋକ କହିଲେ ।

"ଆପଣ ଯଦି ମତେ ବିଶ୍ୱାସ କରୁନାହାନ୍ତି ଦେଇ ଦେଖନ୍ତୁ" ଏହା କହି ଅବନ୍ତୀ କନାପୁଡ଼ା ଗୁଡ଼ା ହୋଇଥିବା କ୍ଷୁଦ୍ର ଲୁହାପାଣଟିଏ ଧନୀଲୋକଙ୍କୁ ଦେଖାଇଲା । ସେ ତୁଳନା କରି ଏହି କଥାକୁ ଗ୍ରହଣ

Digitized by srujanika@gmail.com

ଦେଇ ଯେତେ କହିଲେ ବି ଧନୀଲୋକ ବିଶ୍ୱାସ କଲେ ନାହିଁ । କିନ୍ତୁ ସେ ଅବନ୍ତୀକୁ ବୋକା ମନେକରି ତା'ର ବୋକାମିର ଫାଇଦା ନେବାକୁ



ଭାବିଲେ । ତା'ପରେ ସେ ମଧ୍ୟ ଛଳନାକରି ଉଚ୍ଚ ସ୍ୱରରେ କହିଲେ, "ହଁ, ହଁ ଶୁଭସମ୍ବାଦ ନିଶ୍ଚୟ । ଆନନ୍ଦର କଥା । ମୋ ଲୁହାପାତ୍ରଟି ଛୁଆ ଜନ୍ମକରିଛି ।" ଅବନ୍ତୀ ସାନ ଲୁହାପାତ୍ରଟି ଧନୀଲୋକ ହାତକୁ ବଢ଼ାଇ ଦେଲାବେଳେ କହିଲା, "ଆଃ କି ସୁନ୍ଦର କୁଆଁ ପୁଅ !"

ହଁ, ହଁ, ଛୁଆଟି ଠିକ୍ ତା'ର ମା' ଭଳି ଦିଶୁଛି । ଧନୀଲୋକ ଅବନ୍ତୀ କଥାକୁ ସମର୍ଥନ କରି କହିଲେ । ଅବନ୍ତୀ ଠିକ ଲୁହାପାତ୍ରଟି ଧନୀଲୋକ ହାତରେ ଦେଇ ନିଜ ଘରକୁ ଚାଲିଗଲା । ଧନୀଲୋକ ଖୁସିହୋଇ ମନେ ମନେ କହିଲା—ମୋର ଲୁହାପାତ୍ରର ଯତ୍ନ ନେଉଥା । ସେ ଏହିପରି କେତେ କେତେ ଛୁଆ ଜନ୍ମ କରୁଥାଉ ।

କିଛିଦିନ ପରେ ଅବନ୍ତୀ ଧନୀଲୋକକୁ ଭେଟି କାନ୍ଦି କାନ୍ଦି କହିଲା ଯେ ସେ ଦୁଃଖରେ ତାଙ୍କୁ ସମବେଦନା ଜଣେଇବାକୁ ଆସିଛି । ଧନୀଲୋକ ପଚାରିଲେ, 'କ'ଣ ହେଲା କି ?' ନାସିରୁଦ୍ଦିନ୍ ଅବନ୍ତୀ କାନ୍ଦି କାନ୍ଦି ହୋଇ ଉତ୍ତର ଦେଲା, "ଆପଣଙ୍କ ଲୁହାପାତ୍ରଟି ମରିଗଲା" । ଧନୀଲୋକ ବଡ଼ ପାଟିରେ କହିଲା, 'ଓଲୁ କୋଉଠିକାର ! ଲୁହାପାତ୍ର କ'ଣ କେଉଁଠି

Digitized by srujanika@gmail.com

ମରେ ?' ତହୁଁ ଅବନ୍ତୀ କହିଲା, "ଲୁହାପାତ୍ର ଯେବେ ଛୁଆ ଜନ୍ମ ଦେଇପାରେ ତେବେ ମରିବ ନାହିଁ କାହିଁକି ?"

ତତ୍‌କ୍ଷଣାତ ଧନୀଲୋକ ବୁଝିପାରିଲେ ଯେ ସେ ଠକ ଯାଇଛନ୍ତି । ଅବନ୍ତୀ ତାଙ୍କୁ ବୋକା ବନେଇ ଦେଇଛି । ଲଜ୍ଜିତ ହୋଇ ସେ ଏକ ଉପାୟ ପାଞ୍ଚିଲେ । ତା'ପରେ ସେ କହିଲେ, 'ହଉ ହେଲା, ଯଦି ମୋ ବଡ଼ ଲୁହାପାତ୍ରଟି ମରିଗଲା ତେବେ ତା' ଶବଟା ମୋ ପାଖକୁ ଆଣ ।' ଅବନ୍ତୀ ଉତ୍ତର ଦେଲା, "ଆଜ୍ଞା, ମୁଁ ତା' ଶବକୁ ପୋଡ଼ିଦେଲି ।" ଧନୀଲୋକ ପଚାରିଲେ. 'କେଉଁଠି ପୋଡ଼ିଲ ?' ଅବନ୍ତୀ କହିଲା, "କମାରଶାଳରେ ପୋଡ଼ିଦେଲି ।"

ଧନୀଲୋକ ରଗିଯାଇ କହିଲେ, 'ଠକ, ଧପ୍‌ପାବାଜ୍ ! ତୁ ମତେ ଠକି ମୋ ବଡ଼ ଲୁହାପାତ୍ରଟି ନେବାକୁ ବସିଚୁ ?' ତହୁଁ ଅବନ୍ତୀ କହିଲା, "ତୁମେ ମୋ ଠାରୁ ମୋ ଶ୍ରେଷ୍ଠ ଲୁହାପାତ୍ରଟି ଠକି ନେଲ । ଓଲଟି ପାଟି କରୁଛ ?"

ଫଳରେ ସେ ଦୁହିଁଙ୍କ ମଧ୍ୟରେ କଳି ଲାଗିଗଲା । ପାଟିତୁଣ୍ଡ ହେଲା । କିନ୍ତୁ ଶେଷରେ ଧନୀଲୋକ ମିଳାମିଶା ଲାଗି କହିଲେ । କାରଣ ବେଶୀ ପାଟିତୁଣ୍ଡ. କଳିଗୋଳ ହେଲେ ଲୋକମାନେ ଜମାହେବେ । ସାଇପଡ଼ିଶା ଲୋକମାନେ କୃପଣ, ଅର୍ଥଲୋଭୀ ଧନୀଲୋକଙ୍କୁ ଭଲପାଆନ୍ତି ନାହିଁ । ତେଣୁ ସେମାନେ ତାଙ୍କର ନିନ୍ଦା କରିବେ । ସମସ୍ତେ ତାଙ୍କରି ଭୁଲ ହୋଇଛି ବୋଲି କହିବେ । ତାଙ୍କର ବୋକାମି ବି ଲୋକ ମଧ୍ୟ ଜଣା ପଡ଼ିଯିବ । ତାଙ୍କ ଘୋର ଅପମାନ ହେବ । କିନ୍ତୁ ଅବନ୍ତୀର ନଗା ଅଛି ନା ପଘା ଅଛି ? ଲୋକମାନଙ୍କ ଆଗରେ ତାଙ୍କ ଯାଗୁତା' ଗାଳି ଦେଇ ପାରେ । ତେଣୁ ମାମଲା କରିବା ଲକ୍ଷ୍ୟରେ ଧନୀଲୋକ କହିଲେ, 'ମତେ ତୁ ଶ୍ରେଷ୍ଠ ଲୁହାପାତ୍ରଟିଏ ଦେଇଥିବା କଥା ଯଦି କାହାରିକି ନ କହିବୁ ତେବେ ମୋ ବଡ଼ ଲୁହାପାତ୍ରଟି ମୁଁ ଆଉ ଫେରସ୍ତ ମାଗିବି ନାହିଁ । ସେଇଟି ତୋର ହେବ ।' କିନ୍ତୁ ନାସିରୁଦ୍ଦିନ୍ ଅବନ୍ତୀ ଏଥିରେ ରାଜି ହେଲାନି । ବରଂ ସେ ଖୁବ ଜୋର୍‌ରେ ପାଟିକରି କହିଲା, "ମୋ ଲୁହା-ପାତ୍ରଟି ମୋ ଠାରୁ ଠକିନେଇ ଓଲଟି ମତେ ଠକ ବୋଲି କହୁଛ" ।

Digitized by srujanika@gmail.com

ସେ ଏଡ଼େ ଉଚ୍ଚ ସ୍ୱରରେ ଚିତ୍କାର କଲା ଯେ ଲୋକମାନେ ସେଠାରେ ଗଦାହୋଇ ପଡ଼ିଲେ । ତହୁଁ ନାସିରୁଦ୍ଦିନ୍ ଅବନ୍ତୀ ନିଜ କମିଜର ପୂରାହାତ ଦୁଇଟିକୁ କାନ୍ଧଯାଏ ଟେକି ଟେକି ରାଗରେ ଓ ଘୃଣାରେ ଧନୀଲୋକକୁ ଗାଳିଦେଇ ନିଜ ଘରଆଡ଼େ ଚାଲିଗଲା । କୃପଣ ଧନୀଲୋକର ବୋକାମି ଓ ଅର୍ଥଲୋଭ ପଦାରେ ପକାଇଦେବା ଉଦ୍ଦେଶ୍ୟ ତା'ର ସଫଳ ହେଲା । ଧନୀଲୋକ ନିଜର ବୋକାମି ଯୋଗୁଁ ଅପମାନ ପାଇ ଲାଜରେ ନିଜ ଘର ଭିତରକୁ ଚାଲିଗଲେ । ଲୋକମାନେ ଅବନ୍ତୀଠାରୁ ସବୁକଥା ଶୁଣି କହିଲେ, "ସାବାସ୍ ଅବନ୍ତୀ ସାବାସ୍ । ବୋକା କୃପଣକୁ ଆଚ୍ଛା ପାଠ ଦେଲୁ ।" ଲୋକମାନେ ଧନୀଲୋକର ନିନ୍ଦାକରି ଯେଝା ଘରକୁ ଗଲେ । ଗଲାବେଳେ ସେମାନେ କହୁଥିବାର ଶୁଣାଗଲା—ବାଃ, ବାଃ କୃପଣରେ ଲୁହାପାନ ଛୁଆ ଜନ୍ମକଲା ।

Digitized by srujanika@gmail.com

# ପଥୁରିଆର ସନ୍ତୋଷ

ପୁରାକାଳର କଥା । ଚୀନ୍ ଦେଶରେ ଜଣେ ନାମଜାଦା ପଥୁରିଆ ଥିଲା । ସେ ପଥରରେ ଖୁବ୍ ସୁନ୍ଦର ସୁନ୍ଦର ଜିନିଷ ତିଆରି କରି ପାରୁଥିଲା ।



ଥରେ ଜଣେ ଧନୀଲୋକ ପଥରରେ କେତେକ ଦରକାରୀ ପଦାର୍ଥ ତିଆରି କରେଇବାକୁ ମନ ବଳାଇଲେ । ତେଣୁ ସେ ପଥୁରିଆକୁ ନିଜ ଘରକୁ ଡକାଇଲେ । ପଥୁରିଆ ଧନୀଲୋକର ଘରେ ପହଞ୍ଚି ଦେଖିଲା, ସେ ଏକ ବିରାଟ ପ୍ରାସାଦରେ ବାସ କରୁଛନ୍ତି । ବହୁମୂଲ୍ୟ ପୋଷାକ ପିନ୍ଧିଛନ୍ତି । ତାଙ୍କର ଅନେକ ଦାସଦାସୀ ଅଛନ୍ତି । ମୋଟ ଉପରେ ସେ ବଡ଼ ଆଡ଼ମ୍ବରରେ ରହୁଛନ୍ତି । ଧନୀଲୋକ ପରି ହେବାକୁ ପଥୁରିଆର ଲୋଭ ହେଲା ।

Digitized by srujanika@gmail.com

ଘରକୁ ଫେରି ସେ ଭାବିଲା, ଧନୀଲୋକର ସୁନ୍ଦର କୋଠାବାଡ଼ି, ଧନରତ୍ନ ଓ ଦାସଦାସୀ ତା'ର ହୁଅନ୍ତା କି ? ଏହି କଥା ଚିନ୍ତାକରି ରାତିରେ ତାକୁ ନିଦ ହେଲାନି । ସେ ଈଶ୍ୱରଙ୍କୁ ପ୍ରାର୍ଥନା କଲା ତାକୁ ଧନୀଲୋକ ପରି କରି ଦିଅନ୍ତୁ । ତତ୍‌କ୍ଷଣାତ୍ ଏକ ପରୀ ତା' ସମ୍ମୁଖରେ ଉପସ୍ଥିତ ହୋଇ କହିଲା, "ତୋର ଅଭିଳାଷ ପୂର୍ଣ୍ଣ ହେବ" । ପଥୁରିଆ ପରୀର ପଦତଳେ ପଡ଼ି ନିଜର କୃତଜ୍ଞତା ଜଣାଇଲା ।



ପଥୁରିଆ ଧନୀଲୋକ ହୋଇ ମହା ଆଡ଼ମ୍ବରରେ ଚଳିଲା । କିଛି ଦିନ ପରେ ରାଜାଙ୍କର ଜଣେ ବଡ଼ ଅଫିସର ଘୋଡ଼ାରେ ଚଢ଼ି ତଳିଆ କର୍ମଚାରୀମାନଙ୍କ ଗହଣରେ ଧନୀ ପଥୁରିଆ ରହୁଥିବା ସହର ପରିଦର୍ଶନରେ ଆସିଲେ । ସହରର ଲୋକମାନେ ସେହି ବଡ଼ ଅଫିସରଙ୍କୁ ବହୁତ ମାନ-ସମ୍ମାନ ଦେଖାଇଲେ । କିନ୍ତୁ ଧନୀ ପଥୁରିଆ ନିଜ ଧନ ଗର୍ବରେ ତାଙ୍କୁ ସମ୍ମାନ ଦେଖାଇଲା ନାହିଁ । ସେ ମନେ ମନେ ଭାବିଲା, ତା'ର ଏତେ ଧନସମ୍ପଦ, ଚାକରଚାକରାଣୀ ଥାଉ ଥାଉ ସେ କାହିଁକି ଅଫିସରଙ୍କ ପାଖରେ ମୁଣ୍ଡ ନୁଆଁଇ ଆଜ୍ଞା ହଜୁର କରିବ ? ବଡ଼ ଅଫିସର ତା'ର ବ୍ୟବହାରରେ ଲଜ୍ଜିତ ହେଲେ । ସେ ରାଗିଯାଇ ଧନୀଲୋକକୁ କର୍ମଚାରୀ

Digitized by srujanika@gmail.com

ଲଗାଇ ବଜାରରେ ବାନ୍ଧି ସମସ୍ତଙ୍କ ଆଗରେ ବେତମାଡ଼ ଦେଲେ । ତାକୁ ଜୋରିମାନା କଲେ । ଧର୍ମଲୋକର ମାନମହତ ଇଜ୍ଜତ ସବୁ ନଷ୍ଟ ହେଲା । ସହରର ଲୋକେ ତାକୁଁ ଛି'ଛାକର କଲେ ।

ଘୋର ଲଜ୍ଜା ଓ ଅପମାନରେ ସେ ଭାବିଲା, ଏତେ ଧନରତ୍ନ ଥାଇ ଲାଭ କ'ଣ ? ବାସ୍ତବିକ୍ ବଡ଼ ଅଫିସରମାନଙ୍କର ବହୁତ କ୍ଷମତା । ସେ ଜଣେ ଉଚ୍ଚପଦସ୍ଥ ଅଫିସର ହେବାକୁ କାମନା କଲା । ସେଦିନ ରାତିରେ ପରୀ ତା' ପାଖରେ ଉଭାହୋଇ କହିଲା, "ତୋର କାମନା ପୂରଣ ହେବ ।" ସତକୁ ସତ ପରଦିନ ସକାଳେ ସେ ଜଣେ ଉଚ୍ଚପଦସ୍ଥ ଅଫିସର ଭାବରେ ରାଜାଙ୍କଠାରୁ ନିଯୁକ୍ତି ପତ୍ର ପାଇ ଚୂଆଙ୍ଗ ଜିଲ୍ଲାର ଜିଲ୍ଲାପାଳ ହେଲା । ଉଚ୍ଚ କ୍ଷମତା ପାଇ ସେ ଅଧିକ ଦୁର୍ଦ୍ଦାନ୍ତ ଓ ରୁକ୍ଷ ହେଲା । ଚୂଆଙ୍ଗ ଜିଲ୍ଲାର ଲୋକମାନଙ୍କୁ ନାନାପ୍ରକାର ଅଯଥା ହଇରାଣ ହରକତ କଲା । ତା'ର ଅତ୍ୟାଚାର ଦିନକୁ ଦିନ ବଢ଼ି ଚାଲିଲା । ଦିନେ କର୍ମଚାରୀ-ମାନଙ୍କ ଗହଣରେ ସେ ଘୋଡ଼ା ଚଢ଼ି ଯାଉଥିବା ସମୟରେ ବାଟରେ ଦଳେ ସୁନ୍ଦରୀ ଯୁବତୀଙ୍କୁ ଦେଖିଲା । ଯୁବତୀମାନଙ୍କୁ ବଳାତ୍କାର ଧରି ଆଣିବାକୁ ସେ ଆଦେଶ ଦେଲା । କର୍ମଚାରୀମାନେ ଯୁବତୀ ଝିଅମାନଙ୍କୁ ଧରି ଟଣାଓଟରା କରିବାରୁ ସେମାନେ ପାଟିକରି ଚିତ୍କାର ପକାଇଲେ । ଚୂଆଙ୍ଗର ଚାଷୀ ଯୁବକମାନେ ପାଟିଗୁଣ୍ଡ ଶୁଣି ସେଠାରେ ପହଞ୍ଚି ଜିଲ୍ଲାପାଳ ଓ ରାଜକର୍ମଚାରୀମାନଙ୍କୁ ମାରଧର କଲେ । ଅପମାନିତ ଓ ଆହତ ଅବସ୍ଥାରେ ଜିଲ୍ଲାପାଳ ନିଜ ପ୍ରାସାଦକୁ ଫେରିଲେ । ତହୁଁ ଜିଲ୍ଲାପାଳ ହୋଇଥିବା ପଥୁରିଆ ଭାବିଲା, ଏତେ ବଡ଼ ଅଫିସର ହେଇ କିଛି ଲାଭ ନାହିଁ । ବାସ୍ତବିକ୍ ଜଣେ ତରୁଣ ଚୂଆଙ୍ଗ କୃଷକର ଜୀବନ ଅତି ଆନନ୍ଦ-ମୟ । ସେଦିନ ରାତିରେ ପରୀ ପୁଣି ତା' ଆଗରେ ଦେଖାଦେଇ କହିଲା, "ଯେଉଁପରି ଜୀବନ ଚାହୁଁଛୁ ଆସନ୍ତା କାଲିଠାରୁ ସେହି ଜୀବନ ପାଇବୁ ।"

ପରଦିନ ସକାଳୁ ପଥୁରିଆ ଜଣେ ଯୁବକ ଚୂଆଙ୍ଗ ଚାଷୀ ହୋଇ ଏକ ଗାଁରେ ରହୁଥିବାର ଦେଖାଗଲା । ଚୂଆଙ୍ଗ ଚାଷୀର ସରଳ ଜୀବନ ତାକୁ କିଛିଦିନ ଭଲ ଲାଗିଲା । କିନ୍ତୁ ଦିନେ ଗ୍ରୀଷ୍ମକାଳରେ ପ୍ରଚଣ୍ଡ ସୂର୍ଯ୍ୟ ତାପରେ ହଳ କରୁଥିବା ସମୟରେ ସେ ବିରକ୍ତ ହୋଇ ଭାବିଲା, ଧିକ୍ ଏ ଜୀବନ । ସୂର୍ଯ୍ୟ ତା'ର ପ୍ରଖର କିରଣରେ ସବୁ ଜାଳି ପକାଉଛି । ଏହି

Digitized by srujanika@gmail.com

ସୃଷ୍ଟିରେ ସୂର୍ଯ୍ୟର ଜୀବନ ହେଉଛି ସବୁଠୁଁ ଭଲ । ଆକାଶରେ ସୂର୍ଯ୍ୟ ହେବାକୁ ତା'ର ପ୍ରବଳ ଆଗ୍ରହ ହେଲା । ରାତିରେ ପରୀ ତା' ଆଗରେ ଠିଆ ହୋଇ କହିଲା, "ତୋର ଯେଉଁ ଜୀବନ ପାଇବାକୁ ଏତେ ଆଗ୍ରହ, ତୁ କାଲିଠୁଁ ସେହି ଜୀବନ ପାଇବୁ । ଆକାଶରେ ଥିବା ସୂର୍ଯ୍ୟରେ ତୁ ଲୀନ ହେବୁ । ଫଳରେ ତୁ ସୂର୍ଯ୍ୟଙ୍କ ଜୀବନ ପାଇବୁ ।



ପରିକଳ୍ପିତ ପଥୁରିଆ ସୂର୍ଯ୍ୟରୂପେ ଆକାଶରେ ପରଦିନ ସକାଳେ ଉଦିତ ହେଲା । ଗର୍ବରେ ତା'ର ଛାତି ଫୁଲି ଉଠିଲା । ସେ ଅତି ପ୍ରଖର କିରଣ ଢାଳି ପୃଥିବୀର ଗଛଲତା ଜୀବଜନ୍ତୁଙ୍କୁ ପୋଡ଼ି ପକାଇବାକୁ ଲାଗିଲା । ହଠାତ୍ ଏକ ବଡ଼ କଳା ବଉଦ ଆକାଶରେ ଉଠି ସୂର୍ଯ୍ୟଙ୍କୁ ଘୋଡ଼ାଇ ପକାଇଲା । ତହୁଁ ପଥୁରିଆ ଭାବିଲା, ସୂର୍ଯ୍ୟଠାରୁ ବଉଦ ଅଧିକ ବଳୁଆ । ସେ ବଉଦର ଜୀବନକୁ ପସନ୍ଦ କଲା । ପରୀ ତାକୁ ଖଣ୍ଡେ କଳା ବଉଦ କରିଦେଲା । କିନ୍ତୁ କିଛି ସମୟ ପରେ ପବନ ଜୋର୍‌ରେ ବହିବାରୁ ସେହି କଳା ବଉଦ ଖଣ୍ଡିକ ଟିକି ଟିକି ଖଣ୍ଡମାନ ହୋଇଗଲା । ତହୁଁ ପଥୁରିଆ ଭାବିଲା, ପବନ ବଉଦଠାରୁ ବେଶୀ ବଳବାନ୍ । ତା'ର ବଉଦ ଜୀବନ ଲୋଡ଼ା ନାହିଁ । ତାକୁ ପବନ କରିଦେବାକୁ ସେ ପରୀକୁ ସ୍ମରଣ

Digitized by srujanika@gmail.com

କଲା । ସଙ୍ଗେ ସଙ୍ଗେ ପରୀ ପଦାର୍ଥ କହିଲା, "ପଥୁରିଆ, ତୁ ପବନର ଜୀବନ ପାଇଲେ ଯଦି ସନ୍ତୁଷ୍ଟ ହେବୁ ସେହି ଜୀବନ ତତେ ପ୍ରଦାନ କଲି ।

ପଥୁରିଆ ପବନ ହୋଇଯିବାରୁ ଧରାକୁ ସରା ମଣିଲା । ସେ ଭାବିଲା, ବର୍ତ୍ତମାନ ତା'ଠାରୁ ବଡ଼ ଦୁନିଆରେ କେହି ନାହିଁ । ପ୍ରବଳ ବେଗରେ ପବନ ବହି ବୃକ୍ଷମାନ ଉପାଡ଼ି, ଘରଦ୍ୱାର ଭାଙ୍ଗି ଧାଇଁ ଚାଲିଲା ପବନରୂପୀ ପଥୁରିଆ । ତା' ମନରେ କି ଆନନ୍ଦ ! ବାଧା ବନ୍ଧନ ସବୁ ଡିଙ୍ଗି, ବତାସ ସୃଷ୍ଟିକରି, ସମସ୍ତଙ୍କୁ ଫୋପାଡ଼ି କରୁଡ଼ି ସେ ଚାଲିଲା ଆଗକୁ ଆଗକୁ । କିନ୍ତୁ ଏକ ବଡ଼ ପର୍ବତକୁ ଠେଲି ସେ ଆଉ ଆଗକୁ ଗତିକରି ପାରିଲାନି । ଯେତେ ଜୋର୍‌ରେ ବହିଲେ ବି ପବନ ପର୍ବତକୁ ଠେଲି ପାରିଲା ନାହିଁ । ପବନ ପର୍ବତ ପାଖରେ ହାର ମାନିଲା । ତହୁଁ ପଥୁରିଆ ପବନ-ଜୀବନ ଛାଡ଼ି ପର୍ବତ ହେବାକୁ ମନକଲା । ପରୀ ତା'ର ଇଚ୍ଛା ପୂର୍ଣ୍ଣକଲା । ସେ ପର୍ବତଟିଏ ହୋଇଗଲା । କିଛିଦିନ ପରେ ଦଳେ ପଥୁରିଆ ଆସି ତା'ର ଦେହକୁ ହାଣି ଖଣ୍ଡ ଖଣ୍ଡ ପଥରମାନ ନେଇ ତାକୁ କ୍ଷତବିକ୍ଷତ କଲେ । ତେଣୁ ପର୍ବତରୂପୀ ପଥୁରିଆ ଭାବିଲା, ପଥୁରିଆ ଏ ଜଗତରେ ସବୁଠୁଁ ଶକ୍ତିମାନ୍ । ତା'ର ଜୀବନ ସବୁଠୁ ଭଲ । ପରୀ ସେହି ସମୟରେ ଦେଖାଦେଇ କହିଲା, "ଏବେ ତୁ ନିଜର ଭୁଲ୍ ବୁଝିପାରିଲୁ ତ ? ତୋର ପୂର୍ବ ପଥୁରିଆ ଜୀବନ ପାଇଲେ ତୁ ଖୁସି ହେବୁ ତ ? ତତେ ସନ୍ତୋଷ ମିଳିବ ତ ?

ପର୍ବତରୂପୀ ପଥୁରିଆ କାନ୍ଦି କାନ୍ଦି କହିଲା, "ମତେ କ୍ଷମାକର । ମୋର ପଥୁରିଆ ଜୀବନ ମତେ ଶୀଘ୍ର ଫେରାଇ ଦିଅ ।"

ପରୀ ହସି ହସି କହିଲା, "ତଥାସ୍ତୁ ।"

ସେହିଦିନ ଠାରୁ ପଥୁରିଆ ଜୀବନରେ ସନ୍ତୋଷ ଲାଭକଲା । ସେ ନିଜ କାମକୁ ଅଧିକ ନିଷ୍ଠା, ଅଧିକ ଆନ୍ତରିକତାସହକାରେ ସମ୍ପାଦନ କରି ଜଣେ ବଡ଼ ବିଖ୍ୟାତ ପଥୁରିଆ ହେଲା । ତା'ର ହାତତିଆରି ପଥର ଜିନିଷର ଖୁବ୍ କାଟ୍‌ତି ହେଲା । ଅଳ୍ପଦିନ ମଧ୍ୟରେ ସେ ସମସ୍ତଙ୍କର ଆଦର ଓ ପ୍ରଶଂସା ଲାଭକଲା । ନିଜର ମହତ୍ କର୍ମଦ୍ୱାରା ସେ ଜନ୍ମଭୂମିର ପ୍ରକୃତ ସେବାକରି ତା'ର ଜୀବନ ଧନ୍ୟ ହେଲା । ପଥୁରିଆ ପାଇଲା ଅସରନ୍ତି ସନ୍ତୋଷ ।

---

Digitized by srujanika@gmail.com